# ନିବେଦନ ।

ସହୃଦୟ ଭ୍ରାତୃବର୍ଗ !

ମୁଁ ମାତୃଭାଷାର ସମ୍ପୂର୍ଣ୍ଣ ଅଧିକାରୀ ନୁହେଁ, କେବଳ ବିଦ୍ୟୋତ୍ସାହୀ କନିକାଧିପତିଙ୍କ ପ୍ରଦତ୍ତ ଉତ୍ସାହରେ ସମୁତ୍ସାହିତ ହୋଇ ମାତୃଭାଷାର ଚର୍ଚ୍ଚାରେ ପ୍ରବୃତ୍ତ ହୋଇଅଛି । ମାଦୃଶ ସନ୍ତାନ ଯେ ମାତୃପୂଜାରେ ଯୋଗ୍ୟ ହୋଇ ପାରିବ, ଏଭଳି ଆଶା କରିବା ବୃଥା । ତେବେ ମାତାର ସ୍ନେହଚକ୍ଷୁରେ ସମସ୍ତ ସନ୍ତାନ ସମାନ । ଏହି କଥା ଉପରେ ନିର୍ଭର କରି ଆଜି ଏହି କ୍ଷୁଦ୍ର ନାଟକଟି ଲେଖି ସେହି ସ୍ୱଦେଶହିତୈଷୀ କନିକାର ରାଜା ଶ୍ରୀମାନ୍ ରାଜେନ୍ଦ୍ରନାରାୟଣ ଭଞ୍ଜ ଦେବଙ୍କ ଆନୁକୂଲ୍ୟରେ ପ୍ରକାଶ କରାଇଲି । ନାଟକ ଲେଖିବା କିରୂପ ଦୁରୂହ ବ୍ୟାପାର, ତାହା ଲେଖକମାନେ ଜାଣନ୍ତି ; ତହିଁରେ ପୁଣି ମୁଁ ମାତୃଭାଷାନଭିଜ୍ଞ, ଅତଏବ ଏଥିରେ ବହୁଳ ଦୋଷ ଥିବାର ଅସମ୍ଭବ ନୁହେ, ଆଶା କରେଁ ସହୃଦୟପାଠକବର୍ଗ କ୍ଷମା ଦାନପୂର୍ବକ ପାଠ କଲେ କୃତାର୍ଥ ହେବି । ସନ ୧୯୧୬ ଖ୍ରୀଷ୍ଟାବ୍ଦରେ ଗଣେଶପୂଜା ଉପଲକ୍ଷେ ରାଜେନ୍ଦ୍ରନାରାୟଣ ହାଇସ୍କୁଲର ଛାତ୍ରମଣ୍ଡଳୀ ଏହି ନାଟକର ସୁନ୍ଦର ଅଭିନୟ କରି ମତେ ଏହାର ଅଭାବତ୍ରୁଟିକ ଦେଖାଇ ଦେଇଥିବାରୁ ତାହା ପୂରଣ କରି ସେମାନଙ୍କର ଚିର ମଙ୍ଗଳକାମନା କରୁଅଛି । ଇତି

ରାଜକନିକା, ୧୫ । ୨ । ୧୬ } ଭବତାଂ ପ୍ର ଣେ ଝା

# ସୂଚୀ ।

( ବାଳକାଗଣର ନାନ୍ଦୀ ଗାନ )

## ପ୍ରଥମ ଅଙ୍କ ।

୧ମ ଦୃଶ୍ୟ—ସୂତ୍ରଧାର ଗୃହସମ୍ମୁଖ
ସୂତ୍ରଧାର ଓ ନଟୀ ।

୨ୟ ଦୃଶ୍ୟ—ରାଜମାର୍ଗ ।
ଭଦ୍ରସଂଘ, ବାଉରିଆ ଓ ହାଡ଼ି ।

## ଦ୍ୱିତୀୟ ଅଙ୍କ ।

୧ମ ଦୃଶ୍ୟ—ସିଂହଦ୍ୱାର ।
ବନ୍ଦୀ ସେନ ଓ ମାଗଧବୃନ୍ଦ ।

୨ୟ ଦୃଶ୍ୟ—ଉପବନ ।
ରାଜା, ସୁରୁଚି, ବିଦୂଷକ, ଉତ୍ତମ
ଧ୍ରୁବ, କଞ୍ଚୁକୀ, ପ୍ରତିହାରୀ,
ବାମନାଗୃହୀ ଓ ଉମା ।

୩ୟ ଦୃଶ୍ୟ—ଗ୍ରାମ୍ୟପଥ ।
ଉଦାସୀଦ୍ୱୟ ।

## ତୃତୀୟ ଅଙ୍କ ।

୧ମ ଦୃଶ୍ୟ—ଅନ୍ତଃପୁର ।
ସୁରୁଚି, ଚମ୍ପା, ମାଧବୀ ଓ ଅଘାଧୁ ।

୨ୟ ଦୃଶ୍ୟ—ଅରଣ୍ୟକୁଟୀର ।
ସୁନୀତି, ମାଳତୀ, ଧ୍ରୁବ ଓ
ମୁନିକନ୍ୟାଗଣ ।

୩ୟ ଦୃଶ୍ୟ—ଅଘାଧୁ ଗୃହ ।
ଅଘାଧୁ ଓ ବୁଲ୍ଲ ମା ।

## ଚତୁର୍ଥ ଅଙ୍କ ।

୧ମ ଦୃଶ୍ୟ—ଉପବନ ।
ଧ୍ରୁବ, ନାରଦ ଓ ରାଜା ।

୨ୟ ଦୃଶ୍ୟ—ମନ୍ତ୍ରୀଙ୍କ ଗୃହ ସମ୍ମୁଖ
ମନ୍ତ୍ରୀ ଓ ବିଦୂଷକ ।

୩ୟ ଦୃଶ୍ୟ—ବୈକୁଣ୍ଠ ।
ଲକ୍ଷ୍ମୀ ଓ ନାରାୟଣ ।

୪ର୍ଥ ଦୃଶ୍ୟ—ମଧୁବନ ।
ଧ୍ରୁବ, ସର୍ବହର, ଭୂତ, ପ୍ରେତ,
ଡାକିନୀ, ଶାକିନୀ, ଖେଳଣା-
ବିକ୍ରେତା, ମାୟା, ସୁନୀତି,
ମାଳତୀ, ଶବର ଓ ନାରାୟଣ ।

## ପଞ୍ଚମ ଅଙ୍କ ।

୧ମ ଦୃଶ୍ୟ-କୁଟୀରସମ୍ମୁଖ ବୃକ୍ଷମୂଳ ।
ସୁନୀତି, ମାଳତୀ, ରାଜା, ସୁରୁଚି,
ଉତ୍ତମ, କଞ୍ଚୁକୀ ଓ ଧ୍ରୁବ ।

୨ୟ ଦୃଶ୍ୟ—ଗ୍ରାମ୍ୟପଥ ।
ଜଗୁ ଓ ଭଗୁ ।

୩ୟ ଦୃଶ୍ୟ—ରାଜସଭା ।
ରାଜା, ମନ୍ତ୍ରୀ, ବିଦୂଷକ, ସୁନୀତି,
ସୁରୁଚି, ଧ୍ରୁବ, ଉତ୍ତମ,
ଛତ୍ରଚାମରଧାରୀ ଓ
ଉର୍ବଶୀବୃନ୍ଦ ।

ସମ୍ପୂର୍ଣ୍ଣ ।

ଶ୍ରୀ ଦୁର୍ଗା ରଙ୍ଗଯୁତେତରଂ

# ଧ୍ରୁବତପସ୍ୟା ନାଟକ ।

( ବାଳକ.ଗଣଙ୍କର ନାନ୍ଦୀଗାନ । )

ହେ ଏକ ଦଶନ ବିଘ୍ନ ବିନାଶନ
ଘେନ ମୋ ଭକତି କୁସୁମାଞ୍ଜଳି ।
ତବ ସ୍ନେହଭରେ ସମ୍ପ୍ରତି ନିର୍ଭରେ
ଉଠୁ ହୃଦେ ଜ୍ଞାନ ପ୍ରଦୀପ ଜଳି । ପଦ ।

ତୁମ୍ଭ ବିନା ଭବ-ସମୁଦ୍ର ସଙ୍କଟେ,
ଯାନେ କେଉଁ ଦେବ କରୁଣା ପ୍ରକଟେ,
ଜଡ଼ଙ୍କୁ ବାକ୍‌ପତି, କର ଗଣପତି,
ତୁମ୍ଭର ମହିମା କେ ପାରେ କଳି ।୧।

ଅଗ୍ର-ପୂଜନୀୟ ତୁମ୍ଭେ ତ୍ରିଭୁବନେ,
ଜାଗ୍ରତ ସତତ ଭକତ ଅବନେ;
ସମ୍ପତ୍ତି ସହିତ, ସାଧ ଅନୁ ହିତ,
ତୁମ୍ଭ ଶ୍ରୀଚରଣେ ଭିକ ଅଳି ।୨।

( ପଟ ପ୍ରକ୍ଷେପ )



# ପ୍ରଥମ ଅଙ୍କ ।



## ପ୍ରଥମ ଦୃଶ୍ୟ ।

( ସୂତ୍ରଧାର ଗୃହ ପ୍ରାଙ୍ଗଣ )

ସୂତ୍ରଧାର—(ପ୍ରବେଶ କରି) ବେଶିଗୁଡାଏ କହିବାର ପ୍ରୟୋଜନ ନାହିଁ । ନାଟକାଭିନୟ ଦର୍ଶନ ବିଷୟରେ ଏହି ଗୁଣଗ୍ରାହିଣୀ ସଭାର ଯେ ପ୍ରକାର ଔତ୍ସୁକ୍ୟ ଦେଖ ଯାଉଛି, ତହିଁରେ ଆଉ କାଳକ୍ଷେପ କରିବାର ଉଚିତ ନୁହେ, ଯାଉଛି ନଟୀଙ୍କ ଡାକି ସଙ୍ଗୀତର ଆୟୋଜନ କରେ,

( ନେପଥ୍ୟରୁ ଗୀତ )

କୋକିଳ ବଚନେ ତରଳ ଲୋଚନେ !
ଆସ ମୋର ପାଶେ ଅୟି ସହି ।
ତବ ଆଗମନ ଅଭିଳାଷେ ମନ
ବାଉଦେ ଗୃତକ ପଞ୍ଚମେ ସହି !

ନଟୀ—(ପ୍ରବେଶ କରି) ଆର୍ଯ୍ୟପୁତ୍ର ! ହେଇ ମୁଁ ଆସିଲି, କେଉଁ ନିୟୋଗରେ ଅନୁଷ୍ଠାନ କରିବି, ଆଜ୍ଞା ଦିଅନ୍ତୁ ।

ସୂତ୍ର—ସଖି ! ଆଜ ଗଣେଶ ପୂଜା ଉପଲକ୍ଷେ ନାନା ସ୍ଥାନରୁ ସମାଗତ ସଭ୍ୟମହୋଦୟବୃନ୍ଦ ନୂତନ ନାଟକର ଅଭିନୟ ଦେଖିବା ନିମନ୍ତେ ମୋତେ ଅନୁରୋଧ କରିଛନ୍ତି, ସେମାନଙ୍କର କୌତୁକ ପାଇଁ ମୁଁ "ଧ୍ରୁବତପସ୍ୟା" ନାଟକର ଅଭିନୟ କରିବି ।

ନଟୀ—ପ୍ରିୟତମ ! ଏ ନାଟକର କବି କିଏ ?

ସୂତ୍ର—ପ୍ରିୟେ ! ତୁମ୍ଭେ କନିକାର ରାଜାଙ୍କୁ ଜାଣ ?

ନଟୀ—ଯେଉଁ ମହାତ୍ମା ଦେଶର ଉପକାର ପାଇଁ ମନ-ପ୍ରାଣ ଢାଳି ଦେଇଛନ୍ତି, ତାଙ୍କୁ କି ନ ଜାଣିବାର କଥା !

ସୂତ୍ର—ସେହି ସ୍ୱଦେଶହିତୈଷୀ ବିଦ୍ୟୋତ୍ସାହୀ ପ୍ରଜାବତ୍ସଳ କନିକାଧିପତି ଶ୍ରୀଯୁକ୍ତ ରାଜେନ୍ଦ୍ରନାରାୟଣ ଭଞ୍ଜ ଦେବ ବର୍ମାଙ୍କ ପ୍ରତିଷ୍ଠିତ ହାଇ ବିଦ୍ୟାଳୟର ପ୍ରଧାନ ପଣ୍ଡିତ ସରସ୍ୱତୀ ଶ୍ରୀ ଦାମୋଦର ମିଶ୍ର କାବ୍ୟ-ବ୍ୟାକରଣ-ପୁରାଣ-ସ୍ମୃତିତୀର୍ଥ ଏହାର କବି ଅଟନ୍ତି ।

ନଟୀ—ତେବେ ତ ମଣିକାଞ୍ଚନର ସଂଯୋଗ ।

ସୂତ୍ର—କିପରି ?

ନଟୀ—ବିଷୟଟି ରମଣୀୟ, ତାହା କବିଙ୍କ ଶୋଭାପାଏ ! ତଦୁପରେ ପୁଣି ତୁମ୍ଭପରି ପ୍ରବୀଣ ଲୋକଦ୍ୱାରା ଅଭିନୀତ ହେବ, ଏଥିରେ କି ଆହୁରି ଘଟିବାକୁ ଅଛି ?

ସୂତ୍ର—ପ୍ରିୟେ ! ନା, ନା, ତୁମ୍ଭେ କି ଜାଣ ନାହିଁ ଯେଉଁ ଲୋକ ଯେତିକି ଶିକ୍ଷିତ ସେ ସେତିକି ଭୀରୁ, ଯାହା ହେଉ ମୁଁ ଆଶା କରୁଛି ତୁମ୍ଭତୁଲ୍ୟ ଗୁଣବତୀ ଦୟିତାର ସାହାଯ୍ୟରେ ଏହି ସଜ୍ଜନପୂର୍ଣ୍ଣ ସଭାକୁ ସନ୍ତୁଷ୍ଟ କରି ପାରିବି ।

ନଟୀ—ହୃଦୟେଶ୍ୱର ! ତୁମ୍ଭର ଏ କଥାଟି ଦାସୀ ପ୍ରତି ଅନୁଗ୍ରହ ଭିନ୍ନ ଅନ୍ୟ କିଛି ନୁହେଁ, ତେବେ ଏ ବିଷୟରେ ଦାସୀର କି କର୍ତ୍ତବ୍ୟ ଆଦେଶ ଦିଅ ।

ସୂତ୍ର—ପତିବ୍ରତେ ! ମୁଁ ଅନେକ ଦିନରୁ ତୁମ୍ଭର ମନୋହର ସଙ୍ଗୀତ ଶୁଣି ନାହିଁ, ଆଜି ସବୁ କଥା ପଛକୁ ଥାଉ ଆଗ ଉପସ୍ଥିତ ଏହି ଶରତ୍ ସମୟକୁ ଲକ୍ଷ୍ୟ କରି ଗୋଟିଏ ଗାନ କର ।

ନଟୀ—ହଉ ।

ଗୀତ ।

ରାଗ—ମଣ୍ଡ-ଝିଞ୍ଜ୍ ।

( ଏକତାଳ )

ଦିବସ ରଜନୀ ସବ୍ ରମଣୀୟ
ମଧୁର ଶରତ କାଳେ ।
ବୁଲି ଗଳି ଚଳି କୁଞ୍ଜେ କୁଞ୍ଜେ ଅଳି
ସଙ୍ଗୀତ ଅମୃତ ଢାଳେ । ପଦ ।

ବିରାଜେ ଧରଣୀ ଶସ୍ୟ ନୀଳାମ୍ବରେ,
କେଦାରେ କେଦାରେ ଶୋଭି ଇନ୍ଦୀବରେ,
ପ୍ରିୟା-ସଙ୍ଗେ ମତ୍ତ କଳ ରବରେ,
କପୋତ ପାଦପ ଡାଳେ । ୧ ।

ବିମଳ ସଲିଳ ତାରା ନିଶାକର,
ପୂର୍ଣ୍ଣ ସରସିଜ କୁମୁଦର ସର,
କାନନର ଦୃଶ୍ୟ ଅତି ମନୋହର
ବିବିଧ କୁସୁମଜାଳେ । ୨ ।

ବାସିତ ସମୀର ଶେଫାଳିକା ବାସେ,
ଦଶ ଦିଶ ସିତ ବିକଶିତ କାଶେ;
ତଟିନୀ ନିଜର ସୁଷମା ପ୍ରକାଶେ
ସ୍ପନ୍ଦ ନଳିନମାଳେ । ୩ ।

ବୃଦ୍ଧ—ଅହା ! କି ସୁନ୍ଦର ଗାନ ! କି ସାଣାକ୍ଷଣା ସ୍ୱର ! ପ୍ରିୟେ ! ଏ ସଙ୍ଗୀତଟି ଶୁଣି ମୁଁ ଆପଣାଙ୍କୁ ସମ୍ରାଟ ହେଲାପରି ମନେ କରୁଛି ।

ନେପଥ୍ୟେ—ଏଁ କଏ ସମ୍ରାଟ ହେଉଛି ?

ନଷ୍ଟୀ (ସଭୟେ) ପ୍ରିୟତମ ! ଏପରି କଏ କହୁଛି ?

ବୃଦ୍ଧ—(ନେପଥ୍ୟକୁ ଗୃହିଁ) ରାଜପୁରୁଷ ଭଦ୍ରସିଂହ ଆସୁଛି, ଆସ ଉପବନକୁ ଯିବା ।

( ଉଭୟଙ୍କର ପ୍ରସ୍ଥାନ )

ପଟପରିବର୍ତ୍ତନ ।



## ଦ୍ୱିତୀୟ ଦୃଶ୍ୟ ।

ରାଜମାର୍ଗ ।

ଭଦ୍ରସିଂହ—( ପ୍ରବେଶ କରି ) ଉଃ ଏ ସଂସାରରେ ପରାଧୀନତାହିଁ ବାସ୍ତବିକ ଦୁଃଖ । ଯେଉଁମାନେ ବନ ମଧ୍ୟରେ ଥରେ ମାତ୍ର ଶାଗ ଭାତ ଖାଇ ସ୍ୱାଧୀନ ଭାବରେ କାଳ କାଟୁଛନ୍ତି ସେମାନଙ୍କର ସୁଖ ଅଛି ଶାନ୍ତି ଅଛି, ଆଉ ପର ଘରେ ଗୃକରି କରି ଦିନ ମଧ୍ୟରେ ଡାଳଥର କ୍ଷୀର ପୁରି ଖାଇବା ଲୋକର ତାହା ଅଛିକି ? ବିଶେଷତଃ ଐଶ୍ୱର୍ଯ୍ୟମତ୍ତ ପ୍ରଭୁମାନେ ଦୀନ ସେବକଙ୍କର ସୁଖ ଦୁଃଖ ପ୍ରତି ଆଦୌ ଲକ୍ଷ୍ୟ ରଖନ୍ତି ନାହିଁ କିମ୍ବା ସେବକଙ୍କ ଦେହରେ ଯେ ଗୋଟାଏ ପ୍ରାଣ ଅଛି ତାକୁ ପ୍ରାଣରେ ଗଣନା କରନ୍ତି ନାହିଁ । ଗୃକର ପଛକେ ମରୁ ତାଙ୍କର କାର୍ଯ୍ୟ ସିଦ୍ଧ ହେଲେ ହେଲା, ଦେଖ ବର୍ତ୍ତମାନ

ରାତ୍ର ତନି ପ୍ରହର, ସାଇଁ ସାଇଁ ହୋଇ ନିଶା ଗର୍ଜୁଛି, ଭୂତ ପ୍ରେତ ମେଳା ମେଳା ହୋଉଛନ୍ତି । ଅନ୍ୟର କଥା ଦୂରେ ଥାଉ ଗରିବ ମୂଲିଆ ସୁଦ୍ଧା ନିଜ କୁଡ଼ିଆରେ ସ୍ତ୍ରୀ-ପୁତ୍ର ସହିତ ଶୟନ କରି ଶାନ୍ତି ଅନୁଭବ କରୁଛି । ମନୁଷ୍ୟ କଥା କଅଣ କହିବା ? କୁକୁର, ଶିଆଳ, ପେଚା, ବାଦୁଡ଼ି ଏହି କେତେଟା ବ୍ୟତୀତ ସମସ୍ତ ପଶୁ ପକ୍ଷୀ ନିଦ୍ରା ସୁଖ ଭୋଗ କରୁଛନ୍ତି; ଏତେବେଳେ ମହାରାଜ ମତେ ଆଦେଶ ଦେଇଛନ୍ତି "ଭଦ୍ରସିଂହ ! କାଲି ପ୍ରଭାତରେ ଆମ୍ଭେ ମହାଦେବୀଙ୍କ ସହିତ ପ୍ରମଦବନକୁ ଯିବୁଁ, ବର୍ତ୍ତମାନ ଯାଇଁ ଝାଡୁଦାରକୁ କହି ଆସ ସେ ରାତିରୁ ବାଟ ସବୁ ପରିଷ୍କାର କରି ରଖିବ" ଏହିକ୍ଷଣି ତାହା ପାଖକୁ ନ ଯିବାର ମୋ ବାପରତ ଗୃହ ନାହିଁ, ଯାଉଛି, ଝାଡୁଦାରକୁ ଡାକେ (ନେପଥ୍ୟକୁ ଗୃହିଁ) ଝାଉରିଆ ! ଝାଉରିଆ !

ନେପଥ୍ୟେ—ଅବଧାନ ! (ପ୍ରବେଶ କରି ସ୍ୱଗତ) ଏ କାଳ ପୁରୁଷଟ ଏତେ ରାତିରେ କାହିଁକି ଡାକୁଛି (ପ୍ରକାଶ୍ୟେ) ସାଆନ୍ତେ ! ଦଣ୍ଡବତ, ଏତେବେଳେ ତମେ କୁଆଡେ ?

ଭଦ୍ର—ଆରେ ! ଯାହାଙ୍କର ଯଶରେ ତିନି ଭୁବନ ପୂର୍ଣ୍ଣ ହୋଇଛି, ଆଉ ଆଜ୍ଞାକୁ ନରପତିମାନେ ପୁଷ୍ପମାଳା ପରି ମସ୍ତକରେ ଧାରଣ କରୁଛନ୍ତି ଆମ୍ଭର ସେହି ମହାରାଜ ଉତ୍ତାନପାଦ ତ ନିଜ ବଶରେ ନାହାନ୍ତି ସେହିଠା ଯେତେବେଳେ ଯାହା କହୁଛି ତାହା ସେ ତଳେ ପକାଉ ନାହାନ୍ତି ସେଥିରେ ଆମ ଗରିବ ଚାକରଙ୍କର ବେଳ କାଳ ବିଚାର କରିବାର ସମୟ କାହିଁ ?

ବାଉ—ଆଜ୍ଞା ! ସେଇଟା କିଏ ?

ଭଦ୍ର— ଅରେ ! ତୁ ରାଣୀ ସୁରୁଚିଙ୍କୁ ଜାଣି ନାହୁଁ ?

ବାଉ—ହଁ, ହଁ, ସାଆନ୍ତେ ! ଯେବେ ଆମ ଘରେ ହାରି କହୁଥିଲ ସେଇଟା ରଜାଙ୍କୁ ଚିଖେଇ ବଡ଼ ରାଣୀଙ୍କ ଘରୁ ବାହାର କରି ଦେଇଚି, ସେ ଖାନକପାଳୀ ପିଲା ପୁଅଟିକି ଧରି ବଣରେ ପଳାଇଟି ଭିତରେ ରହି ଯାହା ହଇରାଣ ହଉଚି, ତା ଚେର ଚଣ୍ଡାଳର ହବ ନାହିଁ ପରା, ସବୁଗୁଣ ଥାଇକରି ରଜାଙ୍କର ଏଇଟା ବଡ଼ ନାକରା ହେଇଚି ।

ଭଦ୍ର—ଆରେ ! ପୁଅ ନ ହେଲା ବୋଲିତ ବଡ଼ ରାଣୀ କାହାରି କଥା ନ ମାନି ରଜାଙ୍କୁ ବିବାହ କରେଇ ନିଜର ଦୁଃଖକୁ ଡାକି ଆଣିଛନ୍ତି, ସେ ହଇରାଣ ନ ହୋଇ ହେବ କିଏ ? ସାପ ଅଗ କ୍ଷୀରଦାତାର ପ୍ରାଣ ନାଶ କରେ, ଏତ ସଂସାରର ନିୟମ ।

ବଜ—ଆଜ୍ଞା, ସାନରାଣୀ ବଡ଼ ସୁନ୍ଦରୀ ବୋଲି କି ରଜା ତାର ବଶ ହୋଇଚନ୍ତି ?

ଭଦ୍ର—ନା, ରେ ! ମହାରାଜ ହେଲେ ବୃଦ୍ଧ, ସାନ ରାଣୀ ବର୍ତ୍ତମାନ ତରୁଣୀ । କଥାତ ଅଛି "ବୃଦ୍ଧସ୍ୟ ତରୁଣୀ ଭାର୍ଯ୍ୟା ପ୍ରାଣେଭ୍ୟୋଽପି ଗରୀୟସୀ" ଏଇଥିପାଇଁ ସେ ରଜାଙ୍କୁ ଖେଳ କଣ୍ଢେଇ କରି ରଖିଛି ।

ବାଉ—ସାନ ରାଣୀ ବିନା ଦୋଷରେ ବଡ ରାଣୀଙ୍କୁ ଯେଉଁ କଷ୍ଟ ଦେଉଛି, ସେଥିରେ ତାକୁ ଧର୍ମ କପର ସହୁଛି ?

ଭଦ୍ର—ଆରେ ଦୋଷର ସଙ୍ଗେ ସଙ୍ଗେ କି ଫଳ ହୁଏ, ଜାଣୁ ନାହଁ, କେହି କୁଭୋଜନ କରିବାମାତ୍ର ବ୍ୟାଧି ଜନ୍ମେ ନାହିଁ, କୁକର୍ମର ଫଳ ଯେବେ ଅବଶ୍ୟ ଫଳିବ ।

ବାଉ—ଆଜ୍ଞା, ସାନ ରାଣୀର ଏପର କାମ ଦେଖି ତା ଉପରେ ମୋର ଭାର ରାଗ ହଉଛି ।

ଭଦ୍ର—( ସ୍ୱଗତ ) ଓହୋ ! ମୁଁ କି ଭୁଲ କଲି, ଦୁଷ୍ଟା ସ୍ୱରୁଚିର କଥା ଏହା ଆଗରେ କହିଦେଲି, ନୀଚର ହୃଦୟତ ସ୍ୱଭାବରେ କ୍ଷୁଦ୍ର, ତହିଁରେ ପୁଣି ଏ ମଦୁଆ, ଯେବେ କେତେବେଳେ ପ୍ରକାଶ କରିଦେବ ତେବେ ମୋର ମୁଣ୍ଡ ରହିବ ନାହିଁ, ଏହାକୁ ଡରେଇ ଦେବି, (ପ୍ରକାଶ୍ୟେ) ଆରେ ! ଥାଉ ସେ ରଜା ଘର କଥା, କେଉଁଠି ହାତୀ ଗଳିଯାଏ, ପୁଣି କାହିଁ ପିମ୍ପୁଡ଼ି ଯିବାକୁ ବାଟ ନ ଥାଏ, ଚୁଗୁଲିଆତ କମ୍ ନାହାନ୍ତି, କିଏ ଯେବେ ଶୁଣି ରଜାଙ୍କ ଆଗରେ ଏକଥା କହିଦେବ, ତେବେ ତୋର ମୁଣ୍ଡ କଟା ହେବ, ମୋର ଦାନା ନ ଠାକ ଯିବ ।

ବାଉ—ଆଜ୍ଞା, ମୋର ଏକା କାହିଁକି ମୁଣ୍ଡ କଟାହେବ ?

ଭଦ୍ର—ଆରେ ମୂର୍ଖ ! ତୁ କି ମନେ କରୁଛୁ ଆମ୍ଭ ଦୁହିଙ୍କର ସମାନ ଦଣ୍ଡ ହେବ ? ନା, ସେ କଥା ହେବ ନାହିଁ, ସମସ୍ତେ ଛେଳିକି ବଳି କରନ୍ତି, ସିଂହକୁ କେହି ବଳି କରେ ନାହିଁ, ସେହିପରି ଦୁର୍ବଳକୁ କଠିନ ଦଣ୍ଡ ଦିଆଯାଏ, ବୁଝି ସାବଧାନ ଏକଥା କାହାରି ଆଗରେ କହିବୁ ନାହିଁ, ହାରି କିଏ ?

ବାଉ—ଆଜ୍ଞା, ସେ ମୋ ବଡ ଭଉଣୀ କାଞ୍ଚନମାଳୀର ରାଣ୍ଡ ଯାଆ, ମୋର କବଲ ଗୋବରମା ମଲାଦିନରୁ ମୁଁ ତାକୁ ଆଣି ଦୁଗ୍ଧସ୍ତ କରଚ ।

ଭଦ୍ର—ହା, ହା, ହା, କରେ ! ସେ ପର ଲେଖାରେ ତୋର ଭଉଣୀ ହେଉଚି ?

ବାଉ—ଅଜ୍ଞା, ଆମ ଜାତରେ ଏସବୁ ଚଳେ । (ଏପାଖ ସେପାଖ ଢ଼ଳିବା)

ଭଦ୍ର—କଣର ! ତୁ ଏପରି ହଉଚୁ କ୍ୟାଁ ?

ବାଉ—ଆଜ୍ଞା, ମୁଁ, ମୁଁ, ମୁଁ ସଞ୍ଜିଆ ବେଳେ ଟୋପାଏ ସରାପ ପିଇଥିଲି, ତାପରେ ଉଚ୍ଛୁଣିକା କଣ୍ଠା ନଦରୁ ଉଠି ଆଇଚି, ମୁଣ୍ଡଟା ବୁଲେଇ ଦଉଚି, କାହିଁକି ମତେ ଡ଼ାକିଲ ?

ଭଦ୍ର—କାଲି ସକାଳେ ମହାରାଜ ପ୍ରମଦବନକୁ ବିଜେ କରିବେ, ତୁ ଆଜ ରାତରୁ ବାଟ ସବୁ ସଫା କରି ରଖିବୁ, ବୁଝୁ ଖବରଦାର, ମୁଁ ଯାଉଛି । (ପ୍ରସ୍ଥାନ)

ବାଉ—(ସ୍ୱଗତ) ଏତେ ରାତରେ ଏଡ଼େବଡ ଦାଣ୍ଡକୁ ମୁଁ ତ ଏକା ସଫା କରି ପାରିବି ନାହିଁ, ଯାଉଚି ହାରିକୁ ଡ଼ାକେ, (ନେପଥ୍ୟକୁ ଗୁହାଁ) ଲୋ ହାରି ; ହାରିଲୋ ! ।

ନେପଥ୍ୟେ—କରେ ଅଲ୍ଲାଇଷ ! ତୁ ମତେ ଶୋଇଦେବୁ ନାହିଁକି ?

ବାଉ—ନା ଲୋ ! ମୋର କିଛି କାମ ନାହିଁ, ରଜାଙ୍କର ହୁକୁମ ଆଇଚି ରାତି ଥିଉ ଥାଉଁ ଦାଣ୍ଡ ସବୁ ସଫା ହବ, ଆ ଉଠିଆ, ମୋ ଝାଡୁଟା ପାଚିଆଟା ଧରିଆ !

ହାରି—(ପ୍ରବେଶ କରି) କଲ୍ଲୋମା ! ଗୃକର ଚାକରି ବୋଲି ଆଉ ଧନରାତି ନାହିଁ, ନେ, ନେ, ତୋ ଝାଡୁ ପାଚିଆ ନେ, ମୁଁ ଏତେବେଳେ କାମ କରି ପାରିବ ନାହିଁ, (ଝାଡୁ ପାଚିଆ ପକେଇଦବା)

ବାଉ—ତୁ ଯେବେ କାମ ନ କରିବୁ ମୁଁ ଯାଉଚି ନାହାକ ଆଗରେ ଫେରାଦ କରିମି, ଆଉ କଅଁଶ ଏକା ମୋହର ପିଠି ମାଡ଼ରେ ସଂଝିବ ।

ହାଡ଼ି—ଧନମଣ୍ଡ୍ରା ! କଂସାରିଘର ପାରିକୁ କୁଲ୍ହ ଢ଼ାଉଁ, ଢ଼ାଉ ଢ଼ରଉଛ, ଯା, ତୋ କଉ ବାପ ଅଗରେ ଫେରାଦ ହବୁ ଯା,

( ଗୀତ । )

ଯାରେ ଯାଲେ ଯାରେ ଯାତୁ ହୁଅ ଯା ଫେରାଦ ।
ଦେଇ ନାହିଁ ମତେ କେହି କାମର ବରାଦ । ପଦ ।
କର ଯା ତୁ ଯାଇଁ ଗୁହାରି,
ଯାଉଛି ତୋ ଘରୁ ବାହାରି,
ଜଣା ପଡ଼ୁଲାଣି ସବୁ ତୋହର ଗୁରଦ । ୧ ।

ବାଉ—(ହାଡ଼ିର ଓଠ ଧରି) ମୋ ବାଇଅଣୀକି ପରି, ମୋ ଭଉଣୀଙ୍କ ପରି, ତୁ କାମ ନ କଲେ ସରିବ ନାହିଁ, ଏଁ ଏଁ ଧ, ଧ, ଝାଡ଼ୁ ଧ, (ହାଡ଼ି ହାତରେ ଝାଡୁ ଦବା) ।

ହାଡ଼ି—(ଠେଲି ଦେଇ) ନଈସୁଆ ! ମୁଁ କାମ କରି କରି ମରିବି ତୁ ପଇସା ନେଇ ହରାପ ପିଇଁ ମଉଜ କରିବୁ ଧନେ ଅଧେ ପାନ ଖାଇବାକୁ ପଇସାଟା ମାଗିଲେ ଗାତରେ ପଶିବୁ, ଟୁଲିଆ ! ତୋ କାମ ତୁ କର, ମୁଁ ପାରିବ ନାହିଁ, ( ମୁହଁ ବୁଲେଇ ଦବା ) ।

ବାଉ—ତୋ ଗୋଡତଳେ ପଡୁଛି ଆଉ ରୁଷ ନ, କାଲି ପାନ ଖାଇବାକୁ ଟଙ୍କାଟିଏ ଦେବି । ( ଗୋଡତଳେ ପଡ଼ିବା )

ହାଡ଼ି—ମୋ ମୁଣ୍ଡରେ ହାତ ଦେଇ କହନ ।

ବାଉ—( ହାତ ବଢ଼େଇ ) କାଲି ନିଶ୍ଚେ ଦେବି ।

ହାଡ଼ି—(ଝାଡ଼ୁ ଧରି) ହଉ ତେବେ ଝାଡୁ କରିଦିଏଁ, (ପହଁରିବା)

ବାଉ—( ନାଚି ଗାଇବା ) ।

ଗୀତ ।

କାମ ସାରଦେ ହାର !
ଉଇଁଲଣି ଅକାଶରେ ସାହାନ୍ତ ତାର । ପଦ ।
ଦେଖ ବେଳ ନାହିଁ ଆଉ, ଏକ୍ଷଣି ଷ୍ଟବଟେ କାଉ,
ତେଣା, କର ଠାଇ ଠାଇ ଉଡ଼ିବେ ସାର । ୧ ।
ପର ଘରେ ମୁଣ୍ଡ ବଳ, କାମକୁ ହୋଇଲେ ଢଳ,
ବଢିବା ପାଇଁ ଅଛ କି କାହାର ଗୁର । ୨ ।
ବାକୀ ରହିଲେ ପାଇଟି, ରଜା ପକାଇବେ ପିଟି,
ବହିଯିବ ପିଠି ଫାଟି ରକତଧାର । ୩ ।
ଦୁଷ୍ଟ ରାଜକର୍ମଚାରୀ, ଆମ କଷ୍ଟ ନ ବିଚାରି,
ଦେଖାଇବ ଆଖି ଠାର ନାକର ଜାର । ୪ ।

ହାର—କାମ ତ ସରିଲା, ରାତି ତ ଯାଉ ନାହିଁ, ଗଲି ଟିକିଏ
ଶୋଇ ପଡ଼ିବା ।

ାଜ—ଚୋବର ଚଢ଼େଇକ ପାଟଳା କଦଳୀ, ଆଉ ପଗ୍ରୁରୁ,
ଅ, ଆ, (ହାରର ହାତ ଧରି ପ୍ରସ୍ଥାନ) ।



## ଦ୍ୱିତୀୟ ଅଙ୍କ ।



### ପ୍ରଥମ ଦୃଶ୍ୟ ।

( ସିଂହଦ୍ୱାର । )

କଞ୍ଚୁକୀ—( ପ୍ରବେଶ କରି ) ମୁଁ ଏହି ରାଜାଙ୍କ ଅନ୍ତଃପୁରରେ କଞ୍ଚୁକୀ କାର୍ଯ୍ୟ କରି କରି ଅତି ବୃଦ୍ଧ ହୋଇ ପଡ଼ିଲଣି ମୋର ଦେହ ଦିନେ ଏପରି ଚିକ୍କଣ ଥିଲା ଯେ ମାଛି ବସି ପାରୁ ନ ଥିଲେ, ସେ ପୁଣି ଏତେଦୂର ବିକୃତ ହୋଇ ଗଲଣି ଯେ ବେଳେ ବେଳେ ନିଜର ହାତ ଗୋଡ଼ ଦେଖିଲେ ଗୋଧି ବୋଲି ଭ୍ରମ ହେଉଛି, ଦାନ୍ତଗୁଡ଼ାକ ଭାଙ୍ଗି ଯିବାରୁ ଆଉ ଖାଇବା ପିଇବାର ସୁଖ ନାହିଁ ଯେଉଁ ବେତ ଖଣ୍ଡିକ ବିଧି ଜ୍ଞାନରେ ଧରିଥିଲି କାଳ ପଡ଼ିଲା ଦିନରୁ ସେହି ମୋର ଆଶ୍ରୟ ହୋଇଛି; ରୋମ ଗୁଡ଼ାକ ବିଶେଷ ଭାବରେ ପାଚି ଯିବାରୁ ନଅରର ଦୁଷ୍ଟ ପିଲାମାନେ ଆଜ କାଲି ମତେ ଜ୍ଞାଅନ୍ତି । ପାଣିକଖାରୁ ବୋଲି ଥଟ୍ଟା କରୁଛନ୍ତି, କାନକୁ ଭଲ ଶୁଭୁ ନାହିଁ, ଆଖିକୁ ଦେଖା ଯାଉ ନାହିଁ, ସ୍ମରଣଶକ୍ତି ଏପରି କମି ଗଲାଣି ସେ ବିଜୁଳି ପ୍ରାୟ ଟିକଏ ଦେଖା ଦେଉଛି ତ ଟିକଏ ଲୁଚି ଯାଉଛି, ଆହା ! ସମସ୍ତଙ୍କ ଦିନେ ଏହି ଦଶା ଭୋଗ କରିବାକୁ ହେବ । ସେ ଯାହା ହେଉ, ମହାରାଣୀ ସୁରୁଚି କଅଣ କହିଥିଲେ ଅଁ ଆଁ ତାହା ପାସୋରି ପକେଇଲଣି ସେତ ସହଜ ଲୋକ ନୁହନ୍ତି ଯେ କି ନିଜଠାରୁ ସହି

'ଗୁଣରେ ରୂପବତୀ ଗୁଣବତୀ ହେଲେ ମଧ୍ୟ ଟିକିଏ ବିଳାସିନୀ ନୁହନ୍ତି ବୋଲି ରାଜାଙ୍କୁ ଶିଖେଇ ବୁଝେଇ ରାଣୀ ସ୍ୱାମୀଙ୍କୁ ନିର୍ବାସନଦଣ୍ଡ ଦେଇଛନ୍ତି, ତାଙ୍କର ଆଜ୍ଞା ଅନୁସାରେ କାର୍ଯ୍ୟ ନ କରି ଫେରିଗଲେ କି ମୋର ମହତ୍ତ୍ୱ ରହିବ, କଅଣ କହିବି ? ( ଚିନ୍ତା କରି ) ହିଁ, ହିଁ, ମନେ ପଡ଼ିଲା, ସେ କହିଥିଲେ, "ବିଜୟ ! ତୁମ୍ଭେ ମନ୍ତ୍ରୀଙ୍କୁ କହିଆସ ସୂର୍ଯ୍ୟୋଦୟ ପୂର୍ବରୁ ପ୍ରମଦବନର ମାଧବୀ ମଣ୍ଡପରେ ରାଜସିଂହାସନ ସଜ୍ଜିତ କରି ରଖିବେ ।" ( ଚତୁର୍ଦ୍ଦିଗକୁ ଚାହିଁ ) ଓଃ ପ୍ରଭାତ ହୋଇଗଲାଣି, ଯାଉଛି ମନ୍ତ୍ରୀଙ୍କୁ ଜଣେଇ ଦିଏ, ( ପ୍ରସ୍ଥାନ । )

( ମାଗଧବୃନ୍ଦର ପ୍ରବେଶ ଓ ଗୀତ । )

ଅମୃତ ସରଣି ଉଦୟେ ତରଣି
ଜାଗିଲା ଧରଣୀ ହରଷେ,
ତମିର ବଳୟ ବିହଗ ନିଚୟ
ନିନାଦ ହୃଦୟ ପରଶେ । ପଦ ।

ନୂତନ ତପନ ପ୍ରେମ ଆଶାରେ,
ଫୁଟିଲେ କମଳକୁଳ କାସାରେ,
ଦେଖି ବଧୂ ଅସ୍ତପାତ ଦଶରେ;
କୁମୁଦ ମୁଦ୍ରିତ ସରସେ । ୧ ।

ଝଙ୍କାର ଚହଲେ କାନନେ ଅଳି,
ମକରନ୍ଦ ପାଇଁ କରିଲେ ଅଳି,
ସେ ମଧୁର ଧ୍ୱନି ବୀଣାରୁ ବଳି,
ଶ୍ରବଣେ ପୀୟୂଷ ବରଷେ । ୨ ।

ବୁଡଗଲେ ନଭେ ତାରକାରାଜି,
କ୍ରମରେ ଆଲୋକ ଉଠିଲା ରାଜି,
ମନ୍ଦ ଗନ୍ଧବହ ଶାଖରେ ବାଜି
ବିବିଧ ସନ୍ତାପ କରଷେ । ଂ । ( ପ୍ରସ୍ଥାନ । )

ଷଷ୍ଠ ପରିବର୍ତ୍ତନ ।



## ଦ୍ୱିତୀୟ ଦୃଶ୍ୟ ।

( ଉପବନ । )

( ରାଜା ଉତ୍ତାନପାଦ, ମହାରାଣୀ ସୁରୁଚି, ଯୁବରାଜ ଉତ୍ତମ, ବିଦୂଷକ ବସନ୍ତକ, କଞ୍ଚୁକୀ ବିଜୟ ପ୍ରତୀହାରୀ ଭଦ୍ର ସିଂହର ପ୍ରବେଶ । )

କଞ୍ଚୁକୀ—ମଣିମା, ଏହିବାଟେ ବିଜେ କରିବାକୁ ଅବଧାନ ହେଉନ୍ତୁ ।

ରାଜା—ବିଜୟ ! ଭଦ୍ର ! ତୁମ୍ଭେମାନେ ଦ୍ୱାରଦେଶକୁ ଯାଅ ।

ଉଭୟେ—ଯେ ଆଜ୍ଞା, ( ପ୍ରସ୍ଥାନ । )

ରାଜା—ବୟସ୍ୟ ବସନ୍ତକ ! ଏହିପରି ମାଧବୀ ମଣ୍ଡପ ?

ବିଦୂ—ଆଜ୍ଞା, ହିଁ ।

ସୁରୁଚି—ଆର୍ଯ୍ୟପୁତ୍ର ! ହେଇ ଦେଖ ନାହାନ୍ତି, ମାଧବୀ ଲତା କୁସୁମ ଛଳରେ ସ୍ମିତମୁଖୀ ହୋଇ ମୃଦୁପବନ କମ୍ପିତ ପଲ୍ଲବଅଙ୍ଗୁଳି ସଙ୍କେତରେ ଆପଣଙ୍କୁ ନିକଟକୁ ଡାକୁଛି ।

ରାଜା—ପ୍ରିୟେ ! ମନୋହର ବଚନ ରଚନାରେ ତୁମ୍ଭେ ଅତ୍ୟନ୍ତ ନିପୁଣା ।

ବିଦୂ—(ସ୍ୱଗତ) ଏହିଭଳିଆ କଥା କହି ରଜାଙ୍କୁ ଗୋଡ଼-ତଳେ ଖଟେଇ ରଖିଛି (ପ୍ରକାଶ୍ୟେ) ବୟସ୍ୟ ! ଦେଖିଲୁ ଦେଖିଲୁ, ମାଧବୀ ଅଧୋମୁଖୀ ହୋଇ ମାନ କରିଛି ବୋଲି ମଧୁପ ଏପାଖ ସେପାଖ ହୋଇ ତାକୁ କଅଣ କହୁଛି ?

ରଜା—ବୟସ୍ୟ ! ଠିକ୍ ଅନୁମାନ କରିଛ, ଭ୍ରମର ତାର ମୁଖ ଦର୍ଶନ କରିବା ନିମନ୍ତେ ପ୍ରାର୍ଥନା କରି କହୁଛି—

ଉତ୍କଣ୍ଠିତାଃ କତି ଲତାଲୟା ମୟା
ମାଧବି ! ତ୍ୱଦନୁରାଗବାଞ୍ଛୟା !
ଦୂରମେବ ମକରନ୍ଦ ବିନ୍ଦବଃ
ସନ୍ତୁ, କିନ୍ତୁ ମୁଖମେବ ଦର୍ଶୟ ।

ବିଦୂ—ମହାରାଜ ! ମୁଁ ତ ଏଥିରୁ କିଛି ବୁଝି ପାରିଲି ନାହିଁ, କାଲି ଆଗରେ ମୂଳା ଖାଇବାଇଲା ପରି ମୋର ଏକାନରେ ପଶି ସେ କାନରେ ବାହାରି ଗଲା ।

ରଜା—ମୂର୍ଖ ! ସେ କହୁଛି,

କେତେ ଲତାକୁଞ୍ଜ ତେଜିଲି ବାନ୍ଧବି !
ତୋର ଅନୁରାଗ ଆଶାରେ ମାଧବି !
ଦୂରେ ଥାଉ ପଛେ ମକରନ୍ଦ ବିନ୍ଦୁ,
ଦେଖାଅ ମାତ୍ର ଗୋ ତୋର ମୁଖଇନ୍ଦୁ !

ବିଦୂ—ହଁ, ହଁ, ଏବେ ବୁଝିଲି, ଏହି ସିଂହାସନ ବିଜେ କରନ୍ତୁ ।

( ରାଜା ରାଣୀ ଓ ଯୁବରାଜଙ୍କର ଉପବେଶନ । )

ରାଜା—ବୟସ୍ୟ ! ତୁମ୍ଭେ ବସ ।

ବିଦୂ—( ବସି ) ଏଠାରେ କିଛି ଭଲ ଖାଇବା ପିଇବାର ଯୋଗାଡ ହୋଇଛି ନା କେବଳ ପ୍ରମଦବନର ଶୋଭାରେ ଉଦର ପରିପୂର୍ଣ୍ଣ କରିବାକୁ ହେବ ।

ରାଜା—ବୟସ୍ୟ ! ତୁମ୍ଭେ କି ଖାଇବାଟାକୁ ଜୀବନର ପ୍ରଧାନ କାର୍ଯ୍ୟ ବୋଲି ମନେ କର ?

ବିଦୂ—ମୁଁ କିଣ ଏକା ମନେ କରେ ।

ରାଜା—ଆଉ କିଏ ?

ବିଦୁ—ନା, ନା, ମହାରାଜ ! ଏହି ପେଟଲାଗି ତ ସଂସାର, ଏ ପେଟ ନ ପୂରିଲେ ସମସ୍ତେ ବଣା ହୋଇ ଯାଆନ୍ତି ।

ରାଜା—ଏଥିପାଇଁ କି ସମସ୍ତେ ସର୍ବଦା ଖାଇବି ଖାଇବି ହେଉଛନ୍ତି ?

ବିଦୂ—ସମସ୍ତେ ହେବେ କାହିଁକି ! ଖାଣ୍ଟି ନ ଥିବାରୁ କେବଳ ନ ଥିବା ଲୋକେ ଖାଇବି ଖାଇବି ହୁଅନ୍ତି ।

ରାଜା—( ହସି ) ତୁମ୍ଭର ଟିକିଏ ସେହିଟା ଅଧିକ ।

ବିଦୂ—ମହାରାଜ ! ମୋର ପେଟଟାକୁ ବଡ଼ ଦେଖି କହୁଛନ୍ତି କି ? ନା, ନା, ସବୁ ନଇରେ ଯେ ସୁଅ ଟାଣ,—ତେବେ ମୁଁ ଟିକିଏ କ୍ଷୁଧାକୁ ସମ୍ଭାଳି ପାରେ ନାହିଁ ।

ରାଜା—( ଉତ୍ତମକୁ କୋଳରେ ଧରି ) ବାବା ! ଏ ସ୍ଥାନଟି ତୋତେ କିପରି ଲାଗୁଛି ?

ଉତ୍ତମ—ବାବା ! ମୋର ମନ ହେଉଛି ସବୁବେଳେ ଏହିଠାରେ ରହି ଖେଳନ୍ତି ।

ରାଜା—ଦେବ ! ଆଜ ଉପବନର ଶୋଭା ଅତିଶୟ ରମଣୀୟ ହୋଇଅଛି ।

ସୁରୁଚି—ମୂର୍ତ୍ତିମାନ ବସନ୍ତତୁଲ୍ୟ ଆପଣ ବିଜେ କରିଥିବା ସ୍ଥଳେ ତାର ତ ଶୋଭା ହେବାର କଥା ।

ବିଦୂ—(ସ୍ୱଗତ) ସ୍ୱୟଂ ବସନ୍ତକ ଶର୍ମା ଉପସ୍ଥିତ ଅଛନ୍ତି, ତାଙ୍କ ଲାଗି ଆଉ କଛି ହୋଇ ନାହିଁ, (ପ୍ରକାଶ୍ୟେ ମହାରାଜ ! ଦେଇ ଦେଖନ୍ତୁ ଏହି ପୋଖରୀରେ ଅର୍ଦ୍ଧବିକସିତ ପଦ୍ମ ଏବଂ ଅର୍ଦ୍ଧମୁଦ୍ରିତ କୁମୁଦ ସମାନ ଅବସ୍ଥାପନ୍ନ ହୋଇଥିବାରୁ ମୁଗ୍ଧ ମଧୁପ କାହାର ଉନ୍ମୀଳନ ଆଉ କାହାର ନିମୀଳନ ହେଉଛି ଜାଣି ନ ପାରି କେବଳ ଏହା ପାଖରୁ ତାହା ପାଖକୁ ଦଉଡ଼ାଦଉଡ଼ି କରୁଛି ।

ରାଜା—ବୟସ୍ୟ ! ବିଧାତାଙ୍କର ନିୟମ ଅଲଙ୍ଘନୀୟ, ଜଗତରେ କେହି ଚିରଦିନ ସୁଖୀ ବା ଦୁଃଖୀ ରହେ ନାହିଁ, ଦେଖ କ୍ଷଣକାଳ ପୂର୍ବେ ଯେଉଁ ପଦ୍ମିନୀ ପଦ୍ମନେତ୍ର ମୁଦ୍ରିତ କରି ବିରହିଣୀ ନାୟିକା ତୁଲ୍ୟ ମନୋବେଦନା ଅନୁଭବ କରୁଥିଲା, ସେ ବର୍ତ୍ତମାନ ଉତ୍ଫୁଲ୍ଲିତା ହେଉଛି, ଆଉ ଯେଉଁ କୁମୁଦିନୀର ହାସରେ ଅନ୍ଧକାର ଦୂର ହେଉଥିଲା, ସେ ବିଷାଦମଳିନା ହେଉଛି ।

ସୁରୁଚି—ଏହା ସତ୍ୟ, ଏଥିପାଇଁ ତ ସାଧୁମାନେ ଜଗତକୁ ପରିବର୍ତ୍ତନଶୀଳ କହନ୍ତି ।

ରାଜା—ଦେବ ! ଆଜ ଏଠାକୁ ଆସିବାର ଉଦ୍ଦେଶ୍ୟ ବନବିହାର ନା ଅନ୍ୟ କଛି ?

ସୁରୁଚି—ପ୍ରାଣେଶ୍ୱର ! ଆପଣଙ୍କ ତୁଲ୍ୟ ପତି ଯାହାର ପ୍ରେମପରାଧୀନ, ତାହାର ଆଉ କି ଉଦ୍ଦେଶ୍ୟ ବାକି ଅଛି, ତେବେ—

ରାଜା—ପ୍ରିୟେ ! କଣ କହିବାର ଅଛି କହୁନା କାହିଁକି ?

ବଦୂ—(ସ୍ୱଗତ) ସୁନୀତିଙ୍କୁ ଶୂଳି ଦିଅ ବୋଲି କହିବ, ଆଉ କଅଣ କହିବାର ଅଛି ।

ସୁରୁଚି—ନାଥ ! ମୁଁ ଶୁଣିଛି ସୁନୀତିଙ୍କର ଗୋଟିଏ ପୁଅ ହୋଇଛି, ଏହା କି ସତ୍ୟ ?

ବଦୂ—(ସ୍ୱଗତ) ମୁଁ ତ ଯାହା ଭାବୁଥିଲି ସେହି କଥା ତ ଆରମ୍ଭ କଲାଣି, ଦେଖାଯାଉ କଅଣ କହୁଛି ।

ରାଜା—ହିଁ, ସତ୍ୟ, ସେ ଆମ ଉତ୍ତମଠାରୁ ସାନ ।

ସୁରୁଚି—(ହସି) ପ୍ରିୟତମ ! ଆଜକୁ ଛଅ ବର୍ଷ ହେଲାତ ସେ ନିର୍ବାସିତା, ଆପଣ ସେ ଦିନ କହୁଥିଲେ "ମୁଁ ତାର ମୁହଁ ଚାହେଁ ନାହିଁ" ଆଉ ପୁଅ ହେଲା କିପରି ?

ବଦୂ—(ସ୍ୱଗତ) ଏହିଥର ଜାଲରେ ପକେଇଛି, ଯାଉଛୁ କୁଆଡେ ?

କହ ନିର୍ବାସନର ଏକମାସ ପରେ ମୃଗୟାରୁ ଫେରିଲା ବେଳେ ତାଙ୍କ କୁଡ଼ିଆରେ ରାତ୍ରି ଯାପନ କରିଥିଲି ।

ରାଜା—(ସଙ୍କୁଚିତ ହୋଇ) ଯେବେ ସତ୍ୟକଥାଟି କହିଦେବି ତେବେ ଦେବୀ ଜ୍ୱାଳାମୁଖୀ ହୋଇ ପଡିବେ, ପତ୍ନୀ ନିକଟରେ ମିଥ୍ୟା କହିବା ତ ଦୋଷ ନୁହେଁ, ଏହିପରି କହେଁ । (ପ୍ରକାଶ୍ୟ) ପ୍ରିୟେ ! ନିର୍ବାସନ ସମୟରେ ସେ ଗର୍ଭବତୀ ଥିଲେ ।

ସୁରୁଚି—ତେବେ ପୁଅଟି ତ ପାଞ୍ଚବର୍ଷ ହେବଣି, ତାର ନାମ କଅଣ

ରାଜା—ଏଥିରେ ସନ୍ଦେହ କଅଣ ? ତାହାର ନାମ-କରଣ ମୁଁ କରି ନାହିଁ, ତେବେ ଯଦି ରାଜସଭାରେ ଜଣେ ଆଗନ୍ତୁକ ମୁନି କହିଥିଲେ ତାର ନାମ ଧ୍ରୁବ ।

ସୁରୁଚି—କେବେ ତ ଏହା ମୋ ଆଗରେ କହି ନାହାନ୍ତି ।

ରାଜା—(ଇତସ୍ତତଃ କରି) ଦେବି ! ସେ ପିଲା ତ ସବୁବେଳେ ତାର ମା ନିକଟରେ ଅଛି, ରାଜକାର୍ଯ୍ୟ ବାହୁଲ୍ୟରୁ ମୁଁ ତା କଥା ଏକାବେଳକେ ଭୁଲି ଯାଇଛି ।

ସୁରୁଚି—ସେ ପିଲାକୁ ଦେଖିବାର ଇଚ୍ଛା ହଉଛି ।

ବିଦୂ—(ସ୍ୱଗତ) ବାଳକଟିର ପ୍ରତି କିଛି ଦଣ୍ଡବିଧାନର ଇଚ୍ଛା ହେଉଛି କି ?

ରାଜା—(ସ୍ୱଗତ) ଦେବୀ ମୋ କଥାରେ ଅବିଶ୍ୱାସ କରି ପିଲାକୁ ଦେଖିବାକୁ ଚାହୁଁଛନ୍ତି, ହଉ, (ପ୍ରକାଶ୍ୟେ) କିଏ ଅଛରେ !

କଞ୍ଚୁକୀ—(ପ୍ରବେଶ କରି) ଆଜ୍ଞା, ମୁଁ ।

ରାଜା—ବିଜୟ ! ଏହି ଉପବନର ପଶ୍ଚିମ ପ୍ରାନ୍ତରେ ରାଣୀ ସୁନୀତି ଅଛନ୍ତି, ତାଙ୍କ ନିକଟରୁ ପୁତ୍ର ଧ୍ରୁବକୁ ଡାକି ଆଣ ।

ବିଜୟ—ଆଜ୍ଞା, ଗୋଟିଏ ବ୍ରାହ୍ମଣୀ ମହିମାଙ୍କ ଛାମୁରେ ଦେଖା କରିବା ପାଇଁ ଦ୍ୱାରରେ ଠିଆ ହୋଇଛନ୍ତି ।

ରାଜା—ପଠେଇ ଦେଇ ଯାଅ ।

ବିଜୟ—ଯେ ଆଜ୍ଞା । (ପ୍ରସ୍ଥାନ)

ବ୍ରାହ୍ମଣୀ—(ପ୍ରବେଶ କରି) ମହାରାଜ ! ଶ୍ରୀଛାମୁଙ୍କ ପରି ରଜା ଥାଉଁ ଥାଉଁ ଯେବେ ଏପ୍ରକାର ଅନ୍ୟାୟ ହେବ, କାହାକୁ କହିବି ।

ରାଜା—(ସାଗ୍ରହେ) କିଅଣ କିଅଣ, ତୁମ୍ଭେ କିଏ ?

ବ୍ରାହ୍ମଣୀ—ମୁଁ ଏହି ନଗରବାସୀ ବାମନ ଆଗ୍ନିର୍ଯ୍ୟଙ୍କ ପ୍ରଥମ ସ୍ତ୍ରୀ, ମୋର ନାମ ଉମା, ମୋର ବର କାନ୍ତି ବୋଲି ଗୋଟିଏ ସ୍ତ୍ରୀକି ବିବାହ କରି ବର୍ଷେ ହେଲା ମତେ ଘରୁ ବାହାର କରି ଦେଇଛନ୍ତି, ମୁଁ ବାର ଦ୍ୱାରରେ ବୁଲି ମାଗି ଖାଉଛି । ସୁବିଧା ନ ପାଇ ଶ୍ରୀଛାମୁରେ ଜଣାଇ ପାରୁ ନ ଥିଲି; ଆଜି ଏଠାକୁ ବିଜେ କରିଛନ୍ତି ବୋଲି ଶୁଣି ଆସିଛି, ମୋ ଦୁଃଖ ନ ବୁଝିଲେ ଭସିଯିବି (କ୍ରନ୍ଦନ) ।

ରାଜା—ଆର୍ଯ୍ୟେ ! ତୁନି ହୁଅ ତୁନି ହୁଅ, କିଏ ଅଛି!

ଭଦ୍ର—(ପ୍ରବେଶ କରି) ଆଜ୍ଞା, ମୁଁ ।

ରାଜା—ଭଦ୍ର ! ବାମନ ଆଗ୍ନିର୍ଯ୍ୟଙ୍କୁ ଡାକିଆଣ ।

ଭଦ୍ର—ଯେ ଆଜ୍ଞା, (ପ୍ରସ୍ଥାନ) ।

ସୁରୁଚି—ନାନି ! ତମେ କି କିଛି ଦୋଷ କରିଛ ?

ବିଦୂ—(ସ୍ୱଗତ) ସୁନୀତି କେଉଁ ଦୋଷ କରିଥିଲେ ?

ବ୍ରାହ୍ମଣୀ—ନା ମଣିମା ! ମୋର କିଛି ଦୋଷ ନାହିଁ ।

ରାଜା—(ସ୍ୱଗତ) ସଂସାରରେ ଯେତେ ପ୍ରକାର ବନ୍ଧନ ଅଛି ତା ମଧ୍ୟରେ ଦାମ୍ପତ୍ୟପ୍ରେମ ବନ୍ଧନ ଦୃଢ଼ତମ ବଜ୍ରତୁଲ୍ୟ; କାରଣ ବିନା ତାହାର ଛେଦନରେ କାହାରି ଶକ୍ତି ନାହିଁ, ବିଶେଷତଃ ବ୍ରାହ୍ମଣ କ୍ଷମାଶୀଳ ଜାତି, ସେ ଯେ ବିନା ଅପରାଧରେ ଧର୍ମପତ୍ନୀକୁ ତ୍ୟାଗ କରିଛନ୍ତି, ଏଥିରେ ମୋର ଆଦୌ ବିଶ୍ୱାସ ହେଉ ନାହିଁ, ଆସିଲେ ସମସ୍ତ ରହସ୍ୟ ଜଣା ପଡ଼ିବ ।

ଭଦ୍ର—(ଆଗ୍ନିର୍ଯ୍ୟଙ୍କ ସହିତ ପ୍ରବେଶ କରି) ହେଇ ଆଗ୍ନିର୍ଯ୍ୟ ଆସିଲେ ।

ବାମନ ଆଗୃର୍ଯ୍ୟ—ଅଭ୍ୟୁଦୟୋସ୍ତୁ ।

ରାଜା—ନମସ୍କାର ।

ବାମନ—(ହାତ ଦେଖେଇ) ସ୍ୱସ୍ତ୍ୟସ୍ତୁ,ତେ କୁଶଳମସ୍ତୁ, ଚିରାୟୁ-ରସ୍ତୁ, ଗୋବାଜହସ୍ତିଧନଧାନ୍ୟ ସମୃଦ୍ଧିରସ୍ତୁ ( ଇମାକୁ ଗୃହଁ ସ୍ୱଗତ ମୁଁ ମନେ କରିଥିଲି ଅବା କିଛି ଦାନପାନ ମିଳିବ, ଏହି ରଣ୍ଡୀ ଅସି ଗୁହାରି କରିଛି ବୋଲି ଡକେଇ-ଛନ୍ତି ପରା, ( ପ୍ରକାଶ୍ୟେ ) ମଣିମା, ମତେ କାହିଁକି ଡକେଇଛନ୍ତି ?

ରାଜା— ଆପଣ ଏହି ପ୍ରଥମା ସ୍ତ୍ରୀକୁ ତ୍ୟାଗ କରିଛନ୍ତି ?

ବାମନ—ହଁ,

ରାଜା—କାହିଁକି ?

ବାମନ—ମୁଁ ତ କହୁଛି ଅକାରଣରେ ସ୍ତ୍ରୀ ତ୍ୟାଗ କଲେ ଉପ-ପାତକ ହୁଏ ତହିଁରେ ପ୍ରାୟଶ୍ଚିତ୍ତ ପରାକ ବା ଚାନ୍ଦ୍ରାୟଣ ବ୍ରତ, କିନ୍ତୁ ବଡ଼ ଲୋକଙ୍କୁ ତ ସେ ପାପ ସ୍ପର୍ଶ କରିପାରେ ନାହିଁ । ଗରିବ ଦେଖିଲେ ତାକୁ ସବୁଟିମୁରେ ଗୋଡ଼ରୁ ମୁଣ୍ଡଯାଏ ମାଡ଼ିବସେ ମୁଁ ଏହାକୁ ବିନା କାରଣରେ ତ୍ୟାଗ କରି ନାହିଁ ।

ରାଜା—(ସ୍ୱଗତ) ଦୁଷ୍ଟ ବ୍ରାହ୍ମଣ ମତେ ଲକ୍ଷ୍ୟ କରି କହୁଛି, (ପ୍ରକାଶ୍ୟେ) ଅମ୍ଭେ ତ ସେହି କାରଣ ଶୁଣିବାକୁ ଚାହୁଁଛୁଁ, ଆପଣ ଏଣୁ ତେଣୁ ଗୁଡ଼ାଏ କାହିଁକି କହୁଛନ୍ତି ?

ବିଦୂ—(ସ୍ୱଗତ) ଧିକ କହିଲେ ଗୋସାଇଁଙ୍କ ପ୍ଲୀହା ଚମକି ଉଠେ ।

ବାମନ—ତେବେ ଶୁଣିବା ହେଉ, ଅମ୍ଭ ଜାତିରେ ଏକ ଗର୍ଭଜାତ ବଡ଼ ଥାଉଁ ଥାଉଁ ସାନ ଅଗ୍ନ୍ୟାଧାନ କମ୍ବା ବିବାହ କଲେ

ପରିବେଦନ ନାମରେ ଗୋଟିଏ ପାପ ହୁଏ, ଏହାର ପ୍ରାୟଶ୍ଚିତ୍ତ ପୂର୍ବରୁ ସ୍ତ୍ରୀକୁ ତ୍ୟାଗ କରିବାର ବିଧି; ଏ ସ୍ତ୍ରୀର ପିତା ମତେ ସେହି ପାପରେ ପକାଇ ଥିବାର ଜାଣିପାରି ଶାସ୍ତ୍ରାନୁସାରେ ପ୍ରାୟଶ୍ଚିତ୍ତ କରିଛି ।

ରାଜା—(ବ୍ରାହ୍ମଣୀକୁ ଚାହିଁ) ଆର୍ଯ୍ୟେ ! ତୁମ୍ଭର ପିତା ଏ ପ୍ରକାର ବିବାହ କାହିଁକି କରାଇଲେ ?

ବ୍ରାହ୍ମଣୀ—ମହିମା, ଶ୍ୟାମା ବୋଲି ମୋର ଗୋଟିଏ ବଡ଼ ଭଉଣୀ ଅଛି, ତାର ବର୍ଣ୍ଣ କଣ୍ଠ ମଞ୍ଜିପରି, ଆଉ ବସନ୍ତରେ ଫୁଲ୍ୟପଡ଼ ତାର ଗୋଟିଏ ଆଖି ଫୁଟି ଯାଇଛି, ସହଜେ ତ ସେ କଳାରୁ ଶ୍ଳେଟୀ, ଏଣୁ ତାକୁ ବିବାହ କରିବାପାଇଁ କେହି ରାଜି ହେଲେ ନାହିଁ, ଚାହିଁ ଚାହିଁ ଏଣେ ମତେ ଏଗାର ବର୍ଷ ହୋଇଗଲା, ବ୍ରାହ୍ମଣ ସଂସାର, କେତେ ଧନ ରଖିବେ । ଏଇଥି ପାଇଁ ତାକୁ ଲୁଚେଇ ମତେ ବିବାହ କରେଇ ଦେଲେ ।

ରାଜା—ଆର୍ଯ୍ୟେ, ସେ ଯାହାହେଉ, ଖୋରାକ ଦେବାକୁ ହେବ ।

ବାମନ—ଏଁ, ମୁଁ ଯାହାକୁ ସ୍ମୃତି ଅନୁସାରେ ତ୍ୟାଗପୂର୍ବକ ପ୍ରାୟଶ୍ଚିତ୍ତ କରିଛି, ତାକୁ ଆହୁରି ଖୋରାକ ଦେବି, ଅଛା ବୁଝାମଣା, ଏହା ମୁଁ କରି ପାରିବି ନାହିଁ ।

ରାଜା—ହଉ ହଉ, ଆପଣ ଯାଆନ୍ତୁ, (ବ୍ରାହ୍ମଣୀକି ଚାହିଁ) ଆର୍ଯ୍ୟେ ! ତୁମ୍ଭେ ରଘୁନାଥଙ୍କ ମଠରେ ରହି କାଳ ଯାପନ କର, ଭଦ୍ର ! ଏହାଙ୍କୁ ମଠରେ ଛାଡ଼ି ଆସ ।

ଭଦ୍ର—ଯେ ଆଜ୍ଞା, (ବ୍ରାହ୍ମଣୀ ଓ ବ୍ରାହ୍ମଣ ସହିତ ପ୍ରସ୍ଥାନ) ।

ରାଜା—ବୟସ୍ୟ ! ରାଜାଙ୍କୁ ଲୋକେ ଯେ ଭୂପତି ବୋଲି କହନ୍ତି, ତାହା ଭୁଲ, ଭୂଦାସ କହିବା ଉଚିତ ।

ବିଦୂ—କିପରି ?

ରାଜା—ବୁଝି ପାରିଲ 'ନାହିଁ', ଭୃତ୍ୟର କାର୍ଯ୍ୟ କଅଣ ?

ବିଦୂ—ପ୍ରଭୁଙ୍କୁ ସନ୍ତୋଷ କରିବା ।

ରାଜା—ସମସ୍ତଙ୍କୁ ସନ୍ତୁଷ୍ଟ କରିବା ବିନା ରାଜାର ଆଉ କି କାର୍ଯ୍ୟ ଅଛି ?

ବିଦୂ—(ସ୍ୱଗତ) ସୁନୀତିଙ୍କ ପ୍ରତି ନିଷ୍ଠୁର ବ୍ୟବହାର କଲାବେଳେ ଏ ଜ୍ଞାନ କେଉଁଠି ଥିଲା ! (ପ୍ରକାଶ୍ୟେ) ମହାରାଜ ! ଏହି ହେଉଛି ଆପଣଙ୍କର ମାହାତ୍ମ୍ୟ, ଏ ସବୁ ସଦ୍‌ଗୁଣ ନ ଥିଲେ ବିଧାତା ଆସମୁଦ୍ର ପୃଥିବୀର ଶାସନଭାର ଦିଅନ୍ତେ କାହିଁକି ?

ବିଜୟ—(ଧ୍ରୁବଙ୍କ ସହିତ ପ୍ରବେଶ କରି) ମଣିମା ! ହେଇ ଧ୍ରୁବ ଆସିଲେ ।

ସୁରୁଚି—ଏତେ ବିଳମ୍ବ କଲ କାହିଁକି ?

ବିଜୟ—ଆଜ୍ଞା, ଧ୍ରୁବ ଅନେକ ଦିନରୁ ଲୁଚିଗ ଥିଲେ, ମହାରାଜ ଡକାଉଥିବାର ଶୁଣି ବଡ ମଣିମା ପାଖ ଲୋକ ମାନଙ୍କୁ ବଜାରକୁ ପଠେଇ ପଇସାଟିକର ତେଲ ହଳଦୀ ଅଣେଇଲେ, ଏହାଙ୍କୁ ଲଗେଇ ଗାଧୋଇ ଦେଇ ପଠେଇଲେ ।

ସୁରୁଚି—ଓଃ ପୁଅଟାକୁ ହେଣ୍ଟଚିକ୍କଣ କରି ପଠେଇଛି !

(ଧ୍ରୁବ ନମସ୍କାର କରି ରାଜାଙ୍କ ନିକଟରେ ଠିଆ ହେବା)

ଉତ୍ତମ—ମା, ମା ! ଏ କେଉଁ ମୁନିଙ୍କ ପୁଅ ?

ସୁରୁଚି—ମୁନିଙ୍କ ପୁଅ ବୋଲି କିପରି ଜାଣିଲୁ ?

ଉତ୍ତମ—କନ୍ଦର୍ପିନରୁ ।

ସୁରୁଚି—ଏ ଗୋଟିଏ ରାଜର୍ଷିଙ୍କ ପୁଅ ବୋଲି ଶୁଣୁଛି, ପଚର କହିବ ।

ରାଜା—(ସ୍ୱଗତ) ଦେଖ, ଧ୍ରୁବକୁ ମୋର ପୁତ୍ର ବୋଲି କହିବାକୁ ସୁଇଛା କୁଣ୍ଠିତା ହେଉଛନ୍ତି, ଓଃ ସାପତ୍ନ୍ୟଈର୍ଷ୍ୟା କି ଭୟାନକ, ( ଧ୍ରୁବ ମସ୍ତକରେ ହାତ ଦେଇ ) (ପ୍ରକାଶ୍ୟେ) ବାପ ! ତୁ ମତେ ଚିହ୍ନିଛୁ ?

ଧ୍ରୁବ—ନା, ମା କହିଦେଇଛନ୍ତି, ରଜା ତୋର ବାବା, ତାଙ୍କ ପାଖରେ ଯେଉଁ ରାଣୀ ବସିଥିବେ ସେ ତୋର ସାନ ମା, ସେଠାରେ ଥିବା ପିଲାଟି ତୋର ନନା ।

ସୁରୁଚି—(ସ୍ୱଗତ) ଏଟା ତ ବଣରେ ରହି ଶାଗଭାତ ଖାଇ ମୋ ଉତ୍ତମ ଠାରୁ ବେଶ ସୁନ୍ଦର ହୋଇଛି, ଆହୁରି ଲକ୍‌ଠକ୍‌ରେ କଥାବି କହିଜାଣିଲାଣି, ( ପ୍ରକାଶ୍ୟେ ) ତୁ କଅଣ ରଜା ପୁଅ ହୋଇ ଯୁବରାଜ ହେବାକୁ ଆସିଛୁ ?

ବିଦୂ—(ସ୍ୱଗତ) ଏ ରାକ୍ଷସୀ କେଡ଼େ ନିଷ୍ଠୁର ପ୍ରକୃତ, କପଟ କର୍କଶ କଥା କହୁଛି, ଏହାର ମନକୁ ପରିବର୍ତ୍ତନ କରିଦିଏଁ ( ପ୍ରକାଶ୍ୟେ ) ମହାଦେବ ! ଦେଖନ୍ତୁ ଦେଖନ୍ତୁ ପାଟଳୀ ଫୁଲ ଭିତରେ ଭ୍ରମର ଗୁଡ଼ାକ ନଳୀରେ ଗୋଳି ପଡ଼ିଲା ପରି ଦିଶୁଛନ୍ତି ।

ସୁରୁଚି—ତୁମ୍ଭେ ଦେଖ, ଘରେ ବ୍ରାହ୍ମଣୀ ଆଗରେ ବର୍ଣ୍ଣନା କରିବ ।
ଧ୍ରୁବ—ବାବା ! ମୁଁ ତମ କୋଳରେ ବସନ୍ତି ।
ଉତ୍ତମ—ଆ ମୋ ପାଖରେ ବସିବୁ ଆ ।

ସୁରୁଚି—(ଉତ୍ତମକୁ ଚାହିଁ) ତୁ ନନ୍ଦ, (ଧ୍ରୁବକୁ ଚାହିଁ) ହତଭାଗ୍ୟ ! ଏ ରାଜସିଂହାସନ । ତମ ପଲ୍ଲି ପାଖ ହୁଙ୍କା ନୁହେଁ, ଗରୁଡର ଆସନରେ କି କୁଆ ବସିପାରେ ?

ରାଜା—(ସ୍ୱଗତ) ଆହା ! ସସାଗରବସୁପତିର ପୁତ୍ର ଧ୍ରୁବର ଏ କାଙ୍ଗାଳ ବେଶ ଦେଖି ହୃଦୟ ଶତଧା ବିଦୀର୍ଣ୍ଣ ହେଉଛି, ତହିଁରେ ପୁଣି ତା ପ୍ରତି ଏହାର ଟିକିଏ ଦୟାର ସଞ୍ଚାର ନ ଦେଖି ମନ ଯେ କି ପ୍ରକାର କଲବଲ ହେଉଛି ତାହା ବର୍ଣ୍ଣନାତୀତ, ଧ୍ରୁବକୁ ଆଲିଙ୍ଗନ କରି ମୁଖ ଚୁମ୍ବନ କରିବାର ଇଚ୍ଛା ହେଉଥିଲେ ହେଁ ତାହା କରିପାରୁ ନାହିଁ, ଧିକ୍ ମତେ, ସ୍ତ୍ରୈଣ ହେଲେ ମନୁଷ୍ୟ ଯେଉଁ ମନୋବେଦନା ଭୋଗ କରେ, ତାହା ଅନୁଭବୀ ବ୍ୟତୀତ କେହି ବୁଝି ପାରିବେ ନାହିଁ, (ପ୍ରକାଶ୍ୟ) ଦେବି ! ବାଳକ ପ୍ରତି ଏତାଦୃଶ ବ୍ୟବହାର ଉଚିତ ନୁହେଁ ।

ସୁରୁଚି—ଯେବେ ଏତେ ସୁଆଗ ଅଛି, ଟେକ୍ଲାପଅକୁ ମୁଣ୍ଡରେ ବସେଇ ଗେଲ କର, ମୁଁ ଯାଉଛି । (ଉତ୍ଥାନ)

ରାଜା—(ହାତଧରି ବସେଇ) ଦେବି, କୁପିତ ହୁଅନାହିଁ, ବାଳକ ନିର୍ଦ୍ଦୋଷ ।

ସୁରୁଚି—ନିର୍ଦ୍ଦୋଷ ବୋଲି ସତିଣୀର ଛୁଆକୁ ମୁଁ ଆଦର କରି ପାରିବି ନାହିଁ ।

ବିଦୂ—(ସ୍ୱଗତ) ଯାହାର ବାଳକ ପ୍ରତି ସଙ୍ଗା ଦୟା ନାହିଁ ତାକୁ ପୃଥିବୀ ଧରିଛି କିପରି ? ନା ମୁଁ ଏ ଅଭିନୟ ଦେଖି ସମ୍ଭାଳି ହୋଇ ରହି ପାରିବି ନାହିଁ । (ପ୍ରକାଶ୍ୟ) ବୟସ୍ୟ ! ମୋର ଉଦରାଗ୍ନି ଧକ୍ ଧକ ହୋଇ ଜଳିଲାଣି, ଯାଉଛି

ବଗିଗୃହରେ ବୁଲି ଦୁଇଟା ଫଳମୂଳ ଖୋଜି ତାଙ୍କୁ ଲବେଇ ଦେଏଁ ।

ରାଜା—ହଉ ଯାଅ । ( ବିଦୂଷକର ପ୍ରସ୍ଥାନ )

ଧ୍ରୁବ—ସାନ ମାମା ! ନନା ବସିଛନ୍ତି, ମୁଁ ତ ରାଜାପୁଅ, ବସିବ ନାହିଁ କାହିଁକି ? ( ସିଂହାସନକୁ ଉଠିବାର ଉପକ୍ରମ )

ସୁରୁଚି—( ଧ୍ରୁବଙ୍କୁ ଠେଲିଦେଇ ) ଦାସୀପୁଅ ! ପୋଡ଼ାମୁହାଁ । ମୋ ସଙ୍ଗରେ ଯୁକ୍ତି କରୁଛି, ହଂସ ଦୁଧ ପିଏ ବୋଲି କ ବଗ ଦୁଧ ପିଇବ, ତୁ ଏ ଜନ୍ମରେ ଏ ସ୍ଥାନର ଯୋଗ୍ୟ ନୋହୁ, ଯେବେ କଠିନ ତପସ୍ୟାରେ ବିଶ୍ୱନାଥଙ୍କୁ ସନ୍ତୁଷ୍ଟ କରି ମୋ ଗର୍ଭରେ ଜନ୍ମ ହେବୁ, ତେବେ ଏଥିରେ ବସି ପାରିବୁ, ଏ ସ୍ଥାନ କି ସାମାନ୍ୟ ପୁଣ୍ୟରେ ମିଳେ ?

ବିଜୟ—(ସ୍ୱଗତ ) ରଜାଙ୍କ ଛାତି କଅଣ ପଥରରେ ଗଢ଼ା ହୋଇଛି ନା ସୁରୁଚି କିଛି ଜଡ଼ୀ କରି ଏପରି କରି ଦେଇଛି କେମନ୍ତ ହୃଦୟ—ଦୁଗ୍ଧ ପୋଷ୍ୟ କୁସୁମ-କୋମଳ ବାଳକ ତନୟର ଦୁଃଖରେ ସୁଦ୍ଧା ତରଳ ହେଉ ନାହିଁ ! ଯାଉଛି ଆଉ କିଛି ଦେଖି ପାରିବ ନାହିଁ । ( ପ୍ରସ୍ଥାନ )

ଧ୍ରୁବ—( କଇଁ କଇଁ ହୋଇ କାନ୍ଦି ) ବାବା ! ମା ମା ମତେ ଗା ଦେଉଛନ୍ତି, ( ରଜାଙ୍କୁ ନୀରବ ଓ ଅଧୋମୁଖ ଦେଖି ଯାଉଛି, ( ପ୍ରସ୍ଥାନ ) ।

ରାଜା—( ସ୍ୱଗତ ) ଆହା ! ଧ୍ରୁବର କି ଲାବଣ୍ୟମୂର୍ତ୍ତି, କି ସୁନ୍ଦ ବଚନ, ମୁଁ ହତଭାଗ୍ୟ ନାରୀବଶ ହୋଇ ଆଜି ତାଠାରେ ଯେଉଁ ନିଷ୍ଠୁର ବ୍ୟବହାର କଲି, ତାହା ଚଣ୍ଡାଳ କଥ

ସୁରଙ୍କୁ ଆଜ ପଶୁ ମୃଗୟା କରିବ ନାହିଁ, ମୋର ରାଜା-ପଣିଆକୁ ଧିକ୍; ସୁରୁଚିର ରାଣୀପଣିଆକୁ ଧିକ୍; ଓହୋ ! ମୋର ହୃଦୟ ଶତବୃଶ୍ଚିକଦଂଶନ ତୁଲ୍ୟ ବ୍ୟାକୁଳ ହେଉଛି, କି ଉପାୟ କରିବ ? ଧ୍ରୁବ ତ ମୋର ମନକୁ ଘେନି ପଳାଇଗଲା, ଘରଆଡେ ତାର ଚନ୍ଦ୍ରମୁଖ ବିନା ମତେ ଆଉ କିଛି ଦିଶୁ ନାହିଁ, ଯିବି କୁଆଡେ଼ ?

(ନେପଥ୍ୟରେ ଘଣ୍ଟାଧ୍ୱନି )

ସୁରୁଚି—ସ୍ନାନ ଘଣ୍ଟା ବାଜିଲାଣି, ଯିବା ଚାଲନ୍ତୁ ।

ରାଜା—ହଉ, ଚାଲ, ( ସମସ୍ତଙ୍କର ପ୍ରସ୍ଥାନ )

## ତୃତୀୟ ଦୃଶ୍ୟ ।

(ଗ୍ରାମ୍ୟମାର୍ଗ)

(ଭିକାରି ଦ୍ୱୟର ପ୍ରବେଶ ଓ ଗାନ)

ରାଗ ଭୈରବୀ—ତାଳ ଝୁଲା,

ମତି ଅତି ବିପତ୍ତି ବସତି ଯୁବତି ରୂପରେ ମୋହି ହୁଅନା,
ଆପାତ ମଧୁର ନିପାତକାରୀ ସେ ତାହାର ସୀମା କେବେ ଛୁଁ ଅନା

ପଦ ।

ଯୁବାଜନ ହୃଦ          ପ୍ରମତ୍ତ ଦ୍ୱିରଦ-
ଗଣର ଆଲାନ ଅଟେ ଲଳନା ।
ରତି-ଶୃଙ୍ଖଳାରେ          ଆବଦ୍ଧ ଲୀଳାରେ
ହେଲେ ତାଙ୍କ ଦୁଃଖ ନୁହେଁ କଳନା । ୧ ।

ତା ସଙ୍ଗରେ ରତ          ହେଲେ ହେବୁ ମତ୍ତ
  ଜାଣୁ ତ ପ୍ରମଦା ବୋଲି ତାର ନା ।
ଯେ ରମଣୀ ବଶ          ହୁଅଇ ଅବଶ୍ୟ
  ବୁଡେ ତାର ଭବସିନ୍ଧୁ ପାରି ନା । ୨ ।
ଦୁରନ୍ତ ଅତନୁ-          ବ୍ୟାଧ ନାଶି ତନୁ
  ବାଗୁରି ପାତିଛି ତାହା ମାଡ଼ନା ।
ଜୀବ ବିହଗରେ          ପୁଷ୍ପ ଆଶୁଗରେ
  ଧରି କରଇ ସେ ବହୁ ତାଡ଼ନା । ୩ । ( ପ୍ରସ୍ଥାନ )



## ତୃତୀୟ ଅଙ୍କ ।

### ପ୍ରଥମ ଦୃଶ୍ୟ ।

(ଅନ୍ତଃପୁର)

ସୁରୁଚି—( ବସି ) ଆଜି ମୋର ହୃଦୟ ଏପରି ବ୍ୟାକୁଳ ହେଉ
କାହିଁକି ? ମୁଁ ତ କେବେ ଅତିଥିଙ୍କୁ ଭର୍ତ୍ସନା କରି ନାହିଁ
ଗୋରୁର ଜଳ ପାନରେ ବାଧା ଦେଇ ନାହିଁ, ସ୍ୱାମିଙ୍କ
କିଛି ଅହିତ କରି ନାହିଁ, ମିଥ୍ୟା କହି ନାହିଁ, ବାଳକ
ଧୂଳିଘର ଭାଙ୍ଗି ନାହିଁ, କିମ୍ବା ଗୁରୁ-ବ୍ରାହ୍ମଣଙ୍କର ଅବଜ୍ଞା କ
ନାହିଁ, ଅଥବା କାହାରିକୁ ଆହାର ନିକଟରୁ ଉଠା
ନେଇ ନାହିଁ, କାହାକୁ ପରିହରି ? ତେବେ ମୋର ଏ
ବେଦନାର ହେତୁ କଅଣ ? ଲୋକଙ୍କର ମନ ଜାଣିବାପା
ରମ୍ଭାକୁ ପଠାଇ ଥିଲି, ସେତ ଅବଧି ଫେରିଲା ନାହିଁ ।

ମ୍ମା—( ପ୍ରବେଶ କରି ) ମଣିମା କିଅଣ ଭାବନା କରୁଛନ୍ତି ?

ରୁଚି—କିଏ ରମ୍ମା, ତୁ ତ ଅନେକ ଦିନ ବଞ୍ଚିବୁ ।

ମ୍ମା—କିପରି ?

ରୁଚି—ତୋ କଥା ଭାବିବା ମାତ୍ରେ ତୁ ଆସି ପହଞ୍ଚିଗଲୁ ।

ମ୍ମା—ମୁଁ କିଅଣ କଳଙ୍କ ମୋ କଥା ଭାବୁଥିଲେ ?

ରୁଚି—ତୋହରି ବୁଦ୍ଧି କୌଶଳରେ ତ ମୁଁ ଆଜି ଏତେ ସୌଭାଗ୍ୟବତୀ ହୋଇଛି. ତତେ ତ ମରିବାଯାଏ ପାସୋରି ପାରିବି ନାହିଁ, ''କିଅଣ କଳଙ୍କ'' ପଚାରୁଛୁ କିଅଣ ?

ମ୍ମା—ଆଜ୍ଞା, ଯୁବରାଜଙ୍କର ସବୁଦିନ ଏହି ଦୟାଦୃଷ୍ଟି ଗରିବଠାରେ ଥାଉ ।

ରୁଚି—ତୁ ଯେଉଁ ବିଷୟରେ ଯାଇଥିଲୁ କିଅଣ ଦେଖିଲୁ ?

ମ୍ମା—ଆଜ୍ଞା, ରଜାଙ୍କ ପେଟ କଥାତ ଦେବତାମାନେ ବୁଝିବା କଷ୍ଟ, ମୁଁ କି ବୁଝିବି ? ତେବେ ଯେତେଦୂର ଜାଣିଲି ସବୁ ଭଲ ।

ରୁଚି—ଆଜି ମୋର ମନ କାହିଁକି ଅମୂଲ୍ୟରତ୍ନ ହଜେଇଲାପରି କେଜାଣି ଘାଣ୍ଟି ହେଉଚି ।

ମ୍ମା—( ଗାଇବା ) "ସାରସାକ୍ଷି ନୀଳ କୁନ୍ତଳାରେ ବୃନ୍ଦେ"

ଗୀତ ।

(ତିବ) ଏକି ସ୍ୱିନ୍ନ ମୃଗଲୋଚନା ଗୋ ।
ସଜନରେ ରଜନୀକ ପ୍ରିୟବତ
ବୀଣା-ବଚନା ଦେଖିଲି ନୂଆ ଅଙ୍ଗ । ପଦ !
ନଳିନ ମଳିନ ଥାଉଁ ବିଦାକର—
କର ନିକଟରେ, ଶାରଦ ନୀରଦ

ପୁଷ୍ପାଙ୍କରେ, ବିନା ଅତି ପବନେ
କାହିଁକି ଏ ବନେ
କନକଲତା କମ୍ପେ । ? ୧ ।

ଅଘନ ଗର୍ଜ୍ଜନ ପୁଣି ବାରଝର
ଝର ଝର ଝରେ, ତରଳା ସରଳା
କ୍ଷଣପ୍ରଭା ନାହିଁ, ଦାବଅନଳ
ହରିଣୀ ବିକଳ,
ଧବସେ ଘନତମ । ୨ ।

ସୁରୁଚି—କିଛି କାରଣ ନାହିଁ ସତ୍ୟ, ତଥାପି ବିପଦ ପୂର୍ବରୁ ଦୁଃସ୍ୱପ୍ନ ପ୍ରଭୃତି ଉତ୍ପାତ ଦେଖାଗଲା ପର ମୋର ଚିତ୍ତର ଅସ୍ଥିରତା ବଡ଼ ଅଶଙ୍କା ଜନ୍ମାଉଛି, ଜଣେ ଦୈବଜ୍ଞ ଡାକିଲୁ ବୁଝିବା ।

ଚମ୍ପା—ଯେ ଆଜ୍ଞା, ( ପ୍ରସ୍ଥାନ )

ସୁରୁଚି—( ସ୍ୱଗତ ) ମନ ଯେପରି ହେଉଛି ସେଥିରେ ଯେ କିଛି ଉପଦ୍ରବ ନ ହେବ ତାହା ନୁହେଁ ତେବେ ମୋର ସୌଭାଗ୍ୟରେ କିଛି ବାଧା ନ ହେଲେ ହେଲା ।

ଚମ୍ପା—( ନାୟକ ସହିତ ପ୍ରବେଶ କରି ) ଆଜ୍ଞା, ଏହି ଅଗାଧୁ ନାୟକ ଦ୍ୱାରରେ ଭିକ ମାଗୁଥିଲେ ଡାକିଆଣିଛି ।

ଅଗାଧୁ—(ସ୍ୱଗତ) ମୁଁ ତ ଏଇଠି ଭିକ ମାଗି ମାଗି ବୁଢ଼ା ହେଲଣି, କେବେ ମହାରାଣୀ ଡ଼କେଇ କିଛି ପଚରନ୍ତି ନାହିଁ ବା କତାଏ କଉଡ଼ି କ ମାଟେ ଗୁଡ଼ଲ ଦିଅନ୍ତି ନାହିଁ, ଆଜ କି ଭାଗ୍ୟ (ଭାବ) ହିଁ, ଆଜ ଘରୁ ବାହାରିଲା ବେଳେ ଗୋଟାଏ ପୂର୍ଣ୍ଣମାଠିଆ ଦେଖିଥିଲି, ଏହା ତାହାର ଫଳ

ଯାହା ଦେଉ, ନାହାକାଣୀ ତ ଝିକଲ୍ ଝିକଲ୍ ବୋଲି ନଡ ଗୋଳ କରୁଛି, ଆଜ ତାହାର ମନୋରଥ ସିଦ୍ଧ ହୋଇ ପାରେ (କାଖରୁ ପାଞ୍ଜି ବାହାର କରି ପ୍ରକାଶ୍ୟେ) ମଙ୍ଗଳୋ ଭଗବାନ୍ ବିଷ୍ଣୁ ମଙ୍ଗଳୋ ମଧୁସୂଦନଃ । ମଙ୍ଗଳଂ ପୁଣ୍ଡରୀକାକ୍ଷୋମଙ୍ଗଳୋ ଗରୁଡଧ୍ୱଜଃ । ସୋମବାର, ସପ୍ତମୀ ୧୦ ଦଣ୍ଡ, ମୃଗଶିର ନକ୍ଷତ୍ର ଦ ୨୫।୩୦, ବୃଷଚନ୍ଦ୍ର ୨୭ ଦଣ୍ଡ, ଧୃତି ଯୋଗ ଦ ୧୮।୨୮, ବାଳବ କରଣ ଦ ୧୬।୧୦ ଲତା, ରବ୍ୟଂଶ ୧୫ କଳା ୨୫ ବି କଳାରୁ ମାଘମାସର ୧୮ ଦିନ, ବୃଷକୁ ଜନ୍ମ, ମିଥୁନକୁ ଦ୍ୱାଦଶ, କର୍କଡ଼ାକୁ ଏକାଦଶ, ସିଂହକୁ ଦଶମ, କନ୍ୟାକୁ ନବମ, ତୁଳାକୁ ଅଷ୍ଟମ, ବିଛାକୁ ସପ୍ତମ, ଧନୁକୁ ଷଷ୍ଠ, ମକରକୁ ପଞ୍ଚମ, କୁମ୍ଭକୁ ଚତୁର୍ଥ, ମୀନକୁ ତୃତୀୟ, ମେଷକୁ ଦ୍ୱିତୀୟ, ଶ୍ରୀଯୁକ୍ତଙ୍କର ପୂର୍ବଭାଦ୍ରବ କୁମ୍ଭକୁ ଆଜ ଚତୁର୍ଥ ଚନ୍ଦ୍ର ।

ସୁରୁଚି—ଅବଧାନେ ! ଗୋଟିଏ ଖଡ଼ି ପକେଇଲ, ମୋ ମନ କାହିଁକି ଅକୁଳ ହେଉଛି ?

ଅଗାଧୁ—ଆଜ୍ଞା, ରିକ୍ତ ହସ୍ତରେ ପ୍ରଶ୍ନ କରଯାଏ ନାହିଁ । ଶାସ୍ତ୍ର କହୁଛି "ଫଳେନ ଫଳମାଦିଶେତ୍" ତେବେ ଗୋଟିଏ କଲଶ, ଘିଅଦୀପ, ଥାଳିଏ ଚାଉଳ, ଗୋଟିଏ ନଡ଼ିଆ, ଗୋଟିଏ ଗୁଆ, ଗୃହେଟିଶୁକ୍ଳ ପୁଷ୍ପ, କଛ କଲଶ ଭୋଗ, ଆଉ ଗୋଟିଏ ଟଙ୍କା ଆଣିବାକୁ ଆଜ୍ଞା ଦିଅନ୍ତୁ ।

ସୁରୁଚି—ଚମ୍ପା, ଅବଧାନେ ଯାହା କହୁଛନ୍ତି ଆଣି ଦେ ।

ଚମ୍ପା—ଯେ ଆଜ୍ଞା ( ପ୍ରସ୍ଥାନ ଓ କିଛିକ୍ଷଣ ପରେ ସମସ୍ତ ଦ୍ରବ୍ୟ ଆଣି ଦେବା । )

ଅଗାଧୁ—( ବସି ଅଣ୍ଟାରୁ ଖଡ଼ୀ କାଢ଼ି ଗାର କାଟିବା ଓ ନାକରେ ହାତ ମାରିବା ) ଛୁମୁ ଜଣେ ବୈଷ୍ଣବର ଅବଜ୍ଞା କରିଛନ୍ତି ।

ସୁରୁଚି—ମୁଁ ତ କୌଣସି ବୈଷ୍ଣବର ଅବଜ୍ଞା କରି ନାହିଁ ।

ଅଗାଧୁ—ଆଜ୍ଞା, କପଟବେଶରେ ଅନେକ ସାଧୁ ଆସନ୍ତି ଛୁମୁ ତାହା ଜାଣି ପାରି ନାହାନ୍ତି ।

ସୁରୁଚି—ହୋଇପାରେ, ଏହାର ଫଳ କଅଣ ।

ଅଗାଧୁ—( ନାକରେ ହାତମାରି ) ଆଜ୍ଞା, ଖଡ଼ୀ କହୁଛି ଏ ଦେଷରେ ରଜାଙ୍କ ସଙ୍ଗେ ଛୁମୁଙ୍କର ଛମାସ ବିରହ ହେବ ।

ସୁରୁଚି—ଆଉ ତ କିଛି ହେବ ନାହିଁ ?

ଅଗାଧୁ—ନା

ସୁରୁଚି—ଏହାର ପ୍ରତୀକାର କିଛି ଅଛି ?

ଅଗାଧୁ – ଛମାସ ପର୍ଯ୍ୟନ୍ତ ବିଷ୍ଣୁଙ୍କର ପୂଜା ।

ଚମ୍ପା—ହଉ, ତେବେ ତମେ ଯା, ମଣିମା ଭିତରକୁ ବିଜେ କରନ୍ତୁ ପୂଜାର ଆୟୋଜନ କରିବା; ଲୋ ମାଧବି ! ଏ ଜିନିସପତ୍ର ନେଇଆ ।

( ସୁରୁଚି ଓ ଚମ୍ପାର ପ୍ରସ୍ଥାନ )

ମାଧବୀ—( ପ୍ରବେଶ କରି ) ଅବଧାନେ, ଗୁଡ଼ିଲପତ୍ର ବାନ୍ଧ, ମୁଁ ସବୁ ଥାଳୀ ଫାଳୀ ନେଇ ଯିବି । ( ଅନ୍ୟାନ୍ୟ ଜିନିସ ନେଇଯିବା । )

ଅଗାଧୁ—( ଗୁଡ଼ିଲ ବାନ୍ଧୁ ବାନ୍ଧୁ ସ୍ୱଗତଃ ) ଆଜ ତ ଗୋଟାଏ ଟଙ୍କା ରୋଜଗାର ହୋଇଗଲାଣି, ନାଦାକାଣୀକି ଟିକିଏ ପ୍ରଭାବ ଦେଖେଇ ତା ପରେ ଟଙ୍କା ଦେବି (ପ୍ରସ୍ଥାନ)

ପଟ ପରିବର୍ତ୍ତନ ।

———

## ଦ୍ୱିତୀୟ ଦୃଶ୍ୟ ।

### ଅରଣ୍ୟ କୁଟୀର ।

( ସୁନୀତି ଓ ଦାସୀ ମାଳତୀ )

ନେପଥ୍ୟେ—ମାଳତି ! ମାଳତି !

ସୁନୀତି—କିଏ ଡ଼ାକୁଚି ?

ମାଳତି—ପାଣ୍ଟି ତ ବାରି ପାରିଲି ନାହିଁ, ଯାଉଛି ଦେଖେଁ (ପ୍ରସ୍ଥାନ ଓ ପୁନଃ ପ୍ରବେଶ) ଆଜ୍ଞା, ମୋ ମଉସା ମୋ ପାଖକୁ ଆସିଥିଲା ।

ସୁନୀତି—ମାଳତି ! ପୁଅ ତ ଏତେବେଳ ଯାଏ ଆସିଲା ନାହିଁ, ତାକୁ ନ ଦେଖି ମୋ ମନ କାହିଁକି ଭରି ଧାଣ୍ଡି ହେଉଚି ।

ମାଳତୀ—(ସ୍ୱଗତ) ଓହୋ ! ରକ୍ତର କେତେ ସମ୍ପର୍କ ରହିଚି, ତେଣେ ଧ୍ରୁବ ଅପମାନରେ କାନ୍ଦୁଛନ୍ତି ବୋଲି ଏହାଙ୍କର ହୃଦୟ ଆକୁଳ ହେଉଚି, (ପ୍ରକାଶ୍ୟେ) ମଣିମା ! ବାମ୍ଭଣୀ ପରି ହୁଅନା, ହେଇ ଆସିଲା ପ୍ରାୟ ।

ସୁନୀତି—ମାଳତି ! ତୁ ତ ଜାଣୁ ମୋର ସୁଖ—ଶାନ୍ତି ସବୁ ଯାଇଛି. କେବଳ ଜଗଦୀଶ୍ୱର ଅନୁଗ୍ରହ କରି ସେହି ଛୁଆଟିକି ଦେଇଛନ୍ତି ବୋଲି ସବୁ ତୁଚ୍ଛ କରି ଦେଇଛି. ଦେଖୁଛୁ ତ ଲତ ଯୋଉ ପଡ଼ ମିଳୁଛି ସେଥିରେ ଦିନେ ପେଟ ପୂରୁନାହିଁ, ତୋହରି ଲାଗି ଛୁଆଟି ବଞ୍ଚିଛି; ତୁ ଯେବେ ରଘୁନାଥଙ୍କ ପୂଜାହାରିଙ୍କୁ କହି ପ୍ରସାଦ ଦିଓଟି ମାଗିଆଣି ଦେଉ ନ ଥାନ୍ତୁ, ତେବେ ସେ କଅଣ ହୁଅନ୍ତାଣି ତାହା ତ କହିବାର ନୁହେ, ଆଜ ପୂଜାହାରି କହି ଗଲେଣି ରଜା ସେ ମଠକୁ ଜଣେ ବ୍ରାହ୍ମଣୀ ପଠେଇଛନ୍ତି ଆଉ ପ୍ରସାଦ ବଳିବ ନାହିଁ,

ଏଣିକି ସେଇଟିକି କିପରି ବଞ୍ଚେଇବି ସେହି ଚିନ୍ତା ମୋ
କଲିଜା କାଟି ପକାଉଛି, କଣ କରିବି ?

ମାଳତୀ—ଆଜି ରଜା ଡ଼କେଇ ନେଇଥିବାରୁ ମନେ କରୁଛି
ଖାଇବା ପିଇବାର କିଛି ଠିକ କରି ଦେଇ ପାରନ୍ତି ।

ସୁନୀତି—ମାଳତି ! ତୁ କି ବାଇାଣୀ ହେଲୁ, ପୁଅକୁ ଆସି ପାଞ୍ଚବର୍ଷ
ହେଲା, ଯେଉଁ ରଜା ଅବଧି ତାର ମୁହଁ ଦେଖି ନାହାଁନ୍ତି
ସେ ଆଜି ତାର ଖାଇବାର ଠିକ କରିଦେବେ, ଡ଼କେଇ
ନବାର ଆଉ କିଛି ଉଦ୍ଦେଶ୍ୟ ଥିବ, ପୁଅ ଯେବେ ଭଲରେ
ଫେରି ଆସେ ତେବେ ମୋର ପୂର୍ବଜନ୍ମର ଭାଗ୍ୟ (ମୁହଁରେ
ଲୁଗା ଦେଇ ରୋଦନ ।)

ମାଳତୀ—ମଣିମା ! ତୁନି ହୁଅନ୍ତୁ, ତୁନି ହୁଅନ୍ତୁ, ଏପରି କାହିଁ
କହୁଛନ୍ତି ?

ସୁନୀତି—ତୁ କଅଣ ଶୁଣି ନାହୁଁ, କଣ୍ଟୁକୀ କହୁଥିଲା ରଜାଙ୍କ
ପାଖରେ ଡାକୁଣୀ ସୁରୁଚି ଅଛି ସେଇଥିଲାଗି ପୁଅ
ସେଠାକୁ ପଠେଇବାପାଇଁ ମୋର ଇଚ୍ଛା ହେଉ
ଥିଲା, ପୁଣି ଭାବିଲି ସେହି ତ ରଜାଙ୍କୁ ଶିଖେଇ
ଅକାରଣରେ ମତେ ଏତେସବୁ କରୁଛି, ଏକଥା ଶୁ
ଆଉ କିଛି ଅଧିକ କରିପାରେ, ଏହି ଭୟରେ ପଠେ
ସନ୍ତପନ୍ତ ହେଉଛି, ତାକୁ ନ ଦେଖିବାଯାଏ କି ମୋ
ପ୍ରାଣ ଅଛି । ( ରୋଦନ )

ମାଳତୀ—(ସ୍ୱଗତ) ଯାହା ଏ ଭାବୁଛନ୍ତି ତାହା ସତ (ପ୍ରକାଶ୍ୟ
ମଣିମା ! ତୁନି ହୁଅନ୍ତୁ, ଦୟାମୟ ଭଗବାନ ଅ
ଧନରେ ସବୁ କଷ୍ଟ ଫେଡ଼ିବେ, ତାଙ୍କର ପାଦପଦ୍ମରେ
ଦୁଃଖ ଜଣାନ୍ତୁ ।

ସୁନୀତ—ମାଳତି ! ଲୋକେ କହନ୍ତି "ରାଣୀ ହବାଠାରୁ ଦୁଃଖୀ ନାହିଁ, ରାଣୀ ହବାଠାରୁ ସୁଖ ନାହିଁ" ମୁଁ ତ ରାଣୀ ହୋଇ ସୁଦ୍ଧା ସୁଖ କପରି ଧନେ ଜାଣିଲି ନାହିଁ, ଆଖିରୁ ପାଣି ବହିବା ବନ୍ଦ ହେଲା ନାହିଁ, ଯେ ମୋର ହୃଦୟର ଦେବତା, ଯାହାଙ୍କ ଚରଣରେ ମୁଁ ଆତ୍ମାକୁ ଆଜୀବନ ଉତ୍ସର୍ଗ କରିଛି, ସେହି ଏକମାତ୍ର ଗୁରୁ ଆରାଧ୍ୟ ସ୍ୱାମୀ ଯେତେବେଳେ ମୋତେ ପର କରି ଦେଇଛନ୍ତି ଆଉ କେଉଁ ମାନବ ମୋର ଦୁଃଖ ଫେଡ଼ିବ ? ଏକା ସେହି ଭକ୍ତବତ୍ସଳ ଭଗବାନ ଦୁଃଖ ଫେଡ଼ି ପାରନ୍ତି, ତାଙ୍କୁ ଦିନରାତି ଡାକି ଡାକି କଣ୍ଠ ଶୁଖି ଯାଉଛି, କିନ୍ତୁ ମୋ ପୋଡ଼ା କପାଳକୁ ସେ ସୁଦ୍ଧା ଶୁଣୁ ନାହାନ୍ତି, ଆଉ କେତେ ଡାକିବି ।

ମାଳତୀ—( ନେପଥ୍ୟକୁ ଚାହିଁ ) ହୋଇ ଆମ ଲାବଣ୍ୟନିଧି ଆସିଲେଣି ।

( କାନ୍ଦି କାନ୍ଦି ଧ୍ରୁବଙ୍କର ପ୍ରବେଶ )

ସୁନୀତ—( କୋଳକରି ଲୁହ ପୋଛିଦେଇ ) କିରେ ! ମୋ ବାପ କାହିଁକି କାନ୍ଦୁଛିରେ, ମୋ ଧନ କାହିଁକି କାନ୍ଦୁଛିରେ ? ( ନିଜେ କାନ୍ଦିବା )

ମାଳତୀ—ମଣିମା ! ତୁନି ହୁଅନ୍ତୁ, ତୁନି ହୁଅନ୍ତୁ, ବାପ ତୁନି ହୁଅ, ( ନିଜ କାନିରେ ଉଭୟଙ୍କ ଆଖିରୁ ଲୁହ ପୋଛିବା )

ସୁନୀତ—ମୋ ଦୁଖିଯଙ୍କାଳ ! ତୋତେ କିଏ ମାରିଲା କି କିଏ ଗାଳି ଦେଲା କହୁ ନାହୁଁ କାହିଁକି ?

( ଧ୍ରୁବ ସୁନୀତଙ୍କ କୋଳରେ ମୁହଁ ରଖି କେବଳ କାନ୍ଦିବା )

ମାଳତୀ—ଅଜ୍ଞା, ସେତେବେଳେ ମୋ ମଉସା କହୁଥିଲା ଏ ଯାଇଁ ରଜାଙ୍କ କୋଳରେ ବସିବାକୁ ଗୁହାଁ ବାରୁ ସାନ ମଣିମା ପେଲି ଦେଇ କହିଲେ "ଏ ଜନ୍ମରେ ରାଜସିଂହାସନରେ ବସି ପାରିବୁ ନାହିଁ, ତପ କର୍ ମୋ ପେଟରେ ଜନ୍ମ ହେଲେ ବସିବୁ" ରଜା କିଛି କହିଲେ ନାହିଁ କି କୋଳକୁ ନେଲେ ନାହିଁ, ଏଇଥିପାଇଁ କାନ୍ଦୁଥିବେ ।

ସୁନୀତି—ବାପ ! ଏହି କଥା ?

ଧ୍ରୁବ—ହିଁ, ( ରୋଦନ )

ସୁନୀତି—ବାପ ! ସୁରୁଚି ଯାହା କହିଛି ତାହା ସତ । ଯେଉଁ ଅଭାଗିନୀକି ରଜା ପତ୍ନୀ ବୋଲି କହିବାକୁ ସୁଦ୍ଧା ଲଜ୍ଜିତ ହୁଅନ୍ତି, ଯେ ଆଜ ପତ୍ରଖାଇ କୁଡିଆରେ କଡସରେ ଶୋଇ କାଳ କାଟୁଛି, ତାହାରି ଗର୍ଭରୁ ତୋର ଜନ୍ମ; ତୁ ରାଜସିଂହାସନରେ ବସିବୁ କିପରି ? ଯେବେ ଅନାଥର ନାଥ ଜଗନ୍ନାଥଙ୍କୁ ତପସ୍ୟାରେ ପ୍ରସନ୍ନ କରି ପାରିବୁ, ତେବେ ଇନ୍ଦ୍ରପଦରୁ ବଳି ଉଚ୍ଚପଦରେ ବସିବୁ, ଛାର ରାଜସିଂହାସନ କଅଣ ! ମଣି, ମୋ ଧନ ! ଆଉ କାନ୍ଦନା ।

ମାଳତୀ—ତପ ନ କଲେ କି ଉଚ୍ଚପଦ ମିଳିବ ନାହିଁ ?

ସୁନୀତି—ଅଲେ ! ଖଣି ନ ଖୋଳିଲେ କିଏ ମଣି ପାଏ ?

ଧ୍ରୁବ—ମା, ମା, ମୁଁ ତପ କରିବାକୁ ଆଜ ଯିବି ।

ସୁନୀତି—ବା ! ତୁ ତ ଅବଧି ହାତରେ ଭାତ ଖାଇ ଜାଣି ନାହୁଁ, ପାଠ ପଢି ନାହୁଁ, ବଡ଼ ହେବୁ, ବ୍ରତ ହେବୁ, ଆମ ଗୁରୁଦେବଙ୍କଠାରୁ ମନ୍ତ୍ର ଶିଖିବୁ, ତେବେ ଯାଇଁ ତପ କରିବାକୁ ଯିବୁ, ଏହିକ୍ଷଣି କେଉଁଠିକି ଯିବୁ ?

ଧ୍ରୁବ—ନା, ନା, ମୁଁ ବର୍ତ୍ତମାନ ଯିବ ।

ସୁନୀତି—ମଣି ! ଏ କି କଥା, ତୁ ତ ମୋର ପ୍ରାଣ, ମୋତେ ଛାଡ଼ି ତୁ ତପ କରିବାକୁ ଗଲେ ମୁଁ ଅଉ ବଞ୍ଚିବି ? ତେବେ ଚାଲ ତୁ ଯେଉଁଠାକୁ ଯିବୁ ମୁଁ ତୋର ସଙ୍ଗେ ସଙ୍ଗେ ଯିବି ।

ମାଳତୀ—ଥାଳ ! ତମକୁ ଦଣ୍ଡେ ନ ଦେଖିଲେ ତ ଆଖି ଫୁଟି ଯାଉଛି, ତମେ ମାମାଙ୍କୁ ଛାଡ଼ି କେଉଁ ଆଡ଼କୁ ଯିବ ?

ଧ୍ରୁବ—(ସ୍ୱଗତ) ମାମାଙ୍କର ମୋଠାରେ ଯେପରି ସ୍ନେହ ଦେଖୁଛି, ସେ ମୋତେ କଦାପି ଛାଡ଼ି ଦେବେ ନାହିଁ, ତେବେ ଆଜି ରାତିରେ ଲୁଚି ପଳେଇ ଯିବି ।

ସୁନୀତି—ବାପ ! ଆଉ ଭାବୁଚୁ କଅଣ ? ଥାଳ ! ଆ ଲୁଡ଼ଆ ଭିତରକୁ ଆ, ଅନେକ ବେଳରୁ କିଛି ଖାଇ ନାହୁଁ, କଅଣ ଥିବ ଖାଇବୁ ଆ । (ସମସ୍ତଙ୍କର ପ୍ରସ୍ଥାନ)

(ମୁନି କନ୍ୟାଗଣ କଳସୀ କାଖେଇ ପ୍ରବେଶ କରି ଗାନ)

ଗୀତ ।

ଅହା କି ସୁନ୍ଦର ରବି ଛବିଟି
ଚରମ ଶିଖର ଶୃଙ୍ଗରେ ।
ଚଳ ଚଳ ଖେଳେ ମାଳିନୀ ତରଳ
ତରଙ୍ଗରେ କେଡ଼େ ରଙ୍ଗରେ । ପଦ ।
ଦାବ ବୋଲି ଭୀତ ହୁଅନ୍ତି କୁରଙ୍ଗେ ।
ଭୟେ କୋଳାହଳ କରନ୍ତି ବିହଙ୍ଗେ ।
ନିମୀଳନ ଛଳେ ନଳିନୀ ବିଦାସ୍ତ .
ହିଏ ଉପପତି ଭୃଙ୍ଗରେ । ୧ ।

ଦେଖ ଡାକୁଚନ୍ତି ଶାଖା-କର ଠାରି ।
ଆସ ଲତାମୂଳେ ବସିବା ଗୋ ବାରି ।
ଭଙ୍ଗୀ ବରିଦ୍ବର ଭାବନା କଲେଣି
ରଥାଙ୍ଗୀ ରଥାଙ୍ଗ ସଙ୍ଗରେ । ୨ ।

( ନାଚ ନାଚ ପ୍ରସ୍ଥାନ )

ପଟପରିବର୍ତ୍ତନ ।

---

ତୃତୀୟ ଦୃଶ୍ୟ ।

( ଅଗାଧୁ ନାୟକର ଗୃହ ପ୍ରାଙ୍ଗଣ । )

ଅଗାଧୁ—(ନେପଥ୍ୟରୁ ବୁଲମା, ବୁଲମା, ଡାକ ପ୍ରବେଶ କରି) କଲେ ! ଶୁଣୁ ନାହୁଁ କାହିଁକି ?

ବୁଲମା—(ପ୍ରବେଶ କରି) ଅଜା ଦାଣ୍ଡରୁ ଉଠିଆ ଡାକ ପଡୁଛି କାହିଁକି ? ହଜାର ବାରଣ ଅରଜ ଆଣିଲାପରେ ତ ଜଣା ଯାଉଛି ।

ଅଗାଧୁ—ଆଲୋ ! ମୁଁ ଅରଜୁ ନାହିଁ ତ ଅରଜୁଛି କିଏ ?

ବୁଲମା—ଏହି ଗାଲଟା ଅଛି, ଝିକଲଟା ପାଇଁ ତ ଲଗେଇ ଲଗେଇ ଆସି ବୁଢ଼ୀ ହେଲି ଢିଡ଼ ପାରିଲି ନାହିଁ, ଆଉ ହଜାର ବାରଣ ଅରଜିବା ମୁଣ୍ଡ ଏହି ।

ଅଗାଧୁ—ତୁ ମରିବା ଉପରେ ବସିଲୁଣି, ତଥାପି ତୋ କଳିଆ ସ୍ବଭାବ ଛାଡ଼ିଲୁ ନାହିଁ, ମୁଁ ତତେ ଗୁହଁ ଗୁହଁ ଗାଳି ଦେଉଛୁ ।

ବୁଲମା—ତମଠଉଁ ବଳକର ମୁଁ କଳି କରେ, କ ଯୋଗରେ ଆଜ ଯତ ପାଇଥିଲ, କାହା ମୁଁହ ଗୁହିଁଥିଲ ? ଏହା ହାତ ଧରି

ଘରେ ପେଟ ପୂରିଲା ନାହିଁ, ଛୁଆଗୁଡ଼ାକ ଭୋକରେ କଲବଲ ହେଉଛନ୍ତି, ସୂତା କାଟି କାଟି ମୋ ହାତରେ ତ ଫଣ୍ଡ୍ରି ହେଲାଣି, ସେଥି ଉପରେ [illegible] ତ ହୁର୍ଦ୍ଦ [illegible] ଆଉ ମୁଁ ସହି ପାରିବି ନାହିଁ । ଏହିଥର ନ [illegible] ତେଇଁ ପଡ଼ିବି ।

ଅଗାଧୁ—ଆରେ ! ମୁଁ କମିତି କଳା କରୁଛି, ଯିବେ କଥା କହିଲାକ୍ଷଣି ତୁ ମତେ ପୋଡ଼ ଜାଳି ମାରୁଛୁ, ହଉ ହଉ ତୋ ଘର ତୁ ସମ୍ଭାଳ, ମୁଁ ବୃନ୍ଦାବନକୁ ଯାଉଛି ।

ବୁଲ୍ଲମା—ତୁମେ ଯିବ ବୋଲି ବାଟରେ ଭାତ ତିଅଣ ବାଢ଼ି କରି ଲୋକେ ରଖିଛନ୍ତି ।

ଅଗାଧୁ—(ସ୍ୱଗତ) ମହାତ୍ମାମାନେ ଯେ କହିଛନ୍ତି, "ଦୁଷ୍ଟା ଭାର୍ଯ୍ୟା ଶଠଂ ମିତ୍ରଂ ଭୃତ୍ୟଶ୍ଚୋତ୍ତରଦାୟକଃ, ସସର୍ପେ ଚ ଗୃହେ ବାସୋ ମୃତ୍ୟୁରେବ ନ ସଂଶୟଃ" ।

ଏ କଥାରେ ଟିକିଏ ଭୁଲ ନାହିଁ, (ପ୍ରକାଶ୍ୟେ) ଆରେ ! ମହାରାଣୀ ମତେ ଗୋଟିଏ ଟଙ୍କା ଦେଇଛନ୍ତି, ତାକୁ ବାଟ-ଖର୍ଚ୍ଚ କରି ଯିବି, ପରକୁ ମାଗିବି କାହିଁକି ? ହେଇ ଟଙ୍କା ଦେଖ, (ଟଙ୍କା ଦେଖେଇବା) ।

ବୁଲ୍ଲମା—(ସ୍ୱଗତ) ବୁଢ଼ା ଯେବେ ସତକୁସତ ଚାଲିଯିବ ତେବେ ତ ଟଙ୍କାଟି ମୁଁ ପାଇବି ନାହିଁ, ଟିକିଲିବି ଧନ୍ଦି ପାରିବି ନାହିଁ, କଅଁଳ କଥା କହି ଭୁଲେଇଦିଏଁ, (ପ୍ରକାଶ୍ୟେ) ତେମେ କଣ ବାଯ୍ୟା ହେଲଣି କି ?

ଅଗାଧୁ—କାହିଁକି ?

ବୁଲ୍ଲମା—ମୁଁ ତମ ସାଙ୍ଗରେ ଗେଲି ହେଲି ବୋଲି ତମେ ବଇଶମ ହେବାକୁ ବାହାରୁଛ ।

ଅଗାଧୁ—(ସ୍ୱଗତ) (ଟଙ୍କାକୁ ଦେଖେଇ) ଧନ୍ୟରେ ଟଙ୍କା, ଏ
ଜଗତ୍‌ମଣ୍ଡଳେ ତୋଠାରୁ ବଡ କେହି ନାହିଁ, ଜାତି ବୋଲ,
ମହାତ୍ମା ବ[illegible] ବନ୍ଧୁ ବୋଲ, ମିତ୍ର ବୋଲ, ପୁତ୍ର ବୋଲ,
ଈର୍ଷ୍ୟ [illegible] ସମସ୍ତେ ତୋର ଅଧୀନ, ଶ୍ରେଷ୍ଠଙ୍କୁ ବଡ
କରି [illegible] କେବଳ ତୋହର ଅଛି, ଗରିବଲୋକ
ଯେତେ ବିଦ୍ୱାନ୍ ହେଲେ ସୁଦ୍ଧା ତାଠାରେ ବିଦ୍ୟା ଲଣ୍ଡ
ମୁଣ୍ଡରେ ପାନିଆ ଖୋସିଲା ପରି ସୁନ୍ଦର ଦିଶେ ନାହିଁ,
ତୋର ମୋହିନୀ ଶକ୍ତି ଅତୁଳନୀୟ, ଦେଖ, ଯେ କୋପରେ
ଜଳୁଥିଲା, ତୋତେ ଦେଖିଲା ମାତ୍ରେ ନିଆଁରେ ପାଣି
ପକାଇଲା ପରି ଥଣ୍ଡା ହୋଇଗଲା, ତୋତେ ମୋର
ନମସ୍କାର, (ପ୍ରକାଶ୍ୟେ) ଏଁ ସତେ, ମୁଁ କହିଲି ବା କଣ
କରୁଛି; ହଉ ହଉ ଟଙ୍କା ନେ, ଟିକିଲି ଗଢ଼ି ଶରତ
ମେଘରେ ବିଜୁଳୀ ପରି ପାରିଲା ବାଳରେ ଝୁଲେଇବୁ ।
(ଟଙ୍କା ପ୍ରଦାନ)

ବୁଲିମା—(ଟଙ୍କାନେଇ) ସେ କଥପଣିଆ ରଖ, ସନ୍ଧ୍ୟାହେଲାଣି
ଘରଭିତରକୁ ଆସ ।

ଅଗାଧୁ—ଆଲୋ ! ମତେ ତ ଅନ୍ଧାରକଣା, ମୋ ହାତ ଧର ।

ବୁଲିମା—ହଉ ଆସ, (ବୁଢ଼ାର ହାତଧରି ପ୍ରସ୍ଥାନ)।

(ପଟପରିବର୍ତ୍ତନ)

---

## ଚତୁର୍ଥ ଦୃଶ୍ୟ ।

( କୁଟୀର ପ୍ରାଙ୍ଗଣ । )

ଧ୍ରୁବ—(ପ୍ରବେଶ କରି) ମାମାଙ୍କୁ ଖୁବ୍ ନିଦ ହେଉଛି, ଏତିକି-
ବେଳେ ପଳେଇଲେ ଜାଣି ପାରିବେ ନାହିଁ । ମାମାଙ୍କ

ସ୍ନେହଶୀତଳ କୋଳରେ ଶୋଇଲେ ଯେପରି ସୁଖ ନିଦ୍ରା ହେଉଥିଲା, ଆଜି ତାହା ହେଲା ନାହିଁ, ହେବ ବା କିପରି ? ବିମାତାଙ୍କ କଠୋର କଥାରେ ତ ହୃଦୟ ପୋଡ଼ି-ଯାଉଛି, ଦୁଃଖିନୀର ପୁତ୍ର ବୋଲି ପିତା ମତେ ଏତେ ଗାଳିଦେଲେ, ହଉ, ଯାଉଛି, ନିବିଡ଼ ଅରଣ୍ୟରେ ପଶି ଭକ୍ତବତ୍ସଳ ଭଗବାନଙ୍କୁ ଡାକିବି, ସେହି ମୋର ଅପମାନ ଫେଡ଼ିବେ, (ଉପରକୁ ଚାହିଁ) ଏକ୍ଷଣି ରାତି ତିନିପ୍ରହର ହେଲାଣି, ବିଳମ୍ବ କଲେ ମାମା ଉଠିବେ, (ନେପଥ୍ୟକୁ ଚାହିଁ) ମାମା ମାମା ! ତୋର ହତଭାଗ୍ୟ ସନ୍ତାନ ତୋର କୋମଳ କୋଳ ଛାଡ଼ି କୁଶ-କାଶ-କଣ୍ଟକପୂର୍ଣ୍ଣ ଅରଣ୍ୟକୁ ଯାଉଛି, ଯେବେ ହରିଙ୍କର ଦର୍ଶନ ପାଇବି, ତେବେ ଫେରିଆସି ତୋର ଶ୍ରୀଚରଣ ଦର୍ଶନ କରିବି, ନ ହେଲେ ମାମା, ଡାକ ଆଜିଠାରୁ ଶେଷ ହେଲା । (ହାତ ଉଠାଇ ନମସ୍କାର କରି) ନମସ୍କାର, ଭଗବାନ ! ମାଆର ସନ୍ତାନ ପ୍ରତି ଯେ ପ୍ରକାର ସ୍ନେହ ଥାଏ, ତାହା ଆପଣଙ୍କର ଅବିଦିତ ନୁହେଁ, ଅତଏବ ମୋ ବିନା ମାମା ବ୍ୟାକୁଳ ହେଲେ ତାଙ୍କୁ ପ୍ରବୋଧ କରିବେ । (ପ୍ରସ୍ଥାନ)

ସୁନୀତି—(ହଠାତ୍ ପ୍ରବେଶ କରି) ମୋ ଆଳୁ ଧ୍ରୁବରେ ! ମଣି, ଧ୍ରୁବରେ ! ଏ ଅଭାଗିନୀର ଆଖି ଫୁଟେଇ ଦେଇ କାହିଁ ଗଲୁରେ ।

ମାଳତୀ—(ପ୍ରବେଶ କରି) ମଣିମା ! କଅଣ କଅଣ ?

ସୁନୀତି—ଆଲୋ ! ମୋ ମଣି କେଉଁଆଡ଼େ ପଳେଇ ଗଲା ଲୋ ! ମୁଁ କଅଣ କରିବି ? ମତେ ତ ଦଶ ଦିଗ ଅନ୍ଧାର ଦିଶୁଛି, ଲୋ ମାଳତି !

ମାଳତୀ—ଆପଣ ସମ୍ଭାଳି ହୁଅନ୍ତୁ, ଏପରି ହେଲେ କଅଣ ହେବ ? ତାଙ୍କୁ ତ ପଠେଇଯିବା ବାଟ ଦେଖେଇ ଦେଲେ, ସେଥିରେ ସେ ନ ଯିବେ କାହିଁକି ?

ସୁନୀତି—ସେ କେଉଁଠିକି ଗଲା ଗୁଲ ତାଙ୍କୁ ଖୋଜିବା, ତାଙ୍କୁ ନ ଦେଖି ମୋ ପ୍ରାଣ ବାହାରି ପଡ଼ିଲାପରି ହେଉଛି, ଓହୋ ହୋ ? ( ରୋଦନ )

ମାଳତୀ—ମହାରାଣୀ ! ଭୟ ନାହିଁ, ବର୍ତ୍ତମାନ ଅନେକ ରାତି ଅଛି, ସେ ତ କେଉଁଠାକୁ ଯିବାର ବାଟ ଦେଖି ନାହାନ୍ତି, ଏହିଠି କେଉଁଠି ଥିବେ, ଆସନ୍ତୁ ଖୋଜିବା, ଆଉ ବ୍ୟାକୁଳ ହୁଅନ୍ତୁ ନାହିଁ । ( ଉଭୟଙ୍କର ପ୍ରସ୍ଥାନ )

ପଟ ପରିବର୍ତ୍ତନ ।

---

# ଚତୁର୍ଥ ଅଙ୍କ ।

## ପ୍ରଥମ ଦୃଶ୍ୟ—ପ୍ରମଦବନ ।

(ଧ୍ରୁବଙ୍କର ପ୍ରବେଶ ଓ ଗୀତ ।)

ଗୀତ ।

ଆସ ଆସ ପାଶେ କାହିଁ ଅଛ ଦୟା କର । ପଦ ।

ପାପତାପ ପ୍ରତାପେ ଯାଉଅଛି ସାରା ଦେହ
ଦୁଃଖ ଜଳେ ଭାସେ, ଦିଅ ଦାସ ଦାସେ,
ଚରଣ-ତରି ହେ ।
ଦଶିଯାଏ, ମିଳିଯାଏ, ତବ ଗୁରୁ ବଦନ
ଛାୟା ସର ହେ । ୧ ।

( ଏକ ଦିଗରୁ ବ୍ୟାଘ୍ରର, ଅନ୍ୟ ଦିଗରୁ ଭଲ୍ଲୁକର ପ୍ରବେଶ )
[ ଧ୍ରୁବ ହରି ବୋଲି ବ୍ୟାଘ୍ରକୁ ଧରନ୍ତେ ସେ ଗର୍ଜି ପଳାଇ ଯିବା, ଭଲ୍ଲୁକକୁ ହରି ବୋଲି ଧରନ୍ତେ ସେ ମଧ୍ୟ ଗର୍ଜି ଘାଉଁ ଘାଉଁ କରି ପଳେଇବା, ତା'ପରେ ହରିହେ ! ଏହିପରି ଡାକନ୍ତେ ପ୍ରତିଧ୍ୱନି ଶୁଣି ଏ ପାଖ ସେ ପାଖ ଦଉଡ଼ିବା ]

ନାରଦ—(ପ୍ରବେଶ କରି) ଅନେକ ଦିନରୁ ଭାଗୀରଥୀ ଜଳରେ ଆହ୍ନିକ କରି ନାହିଁ, ଆଜି ତାହା କରିବାକୁ ଆସିଛି, ମନେ କରିଥିଲି ଆସୁ ଆସୁ ପ୍ରଭାତ ହୋଇଯିବ, କିନ୍ତୁ ବୀଣାର ତାନରେ ଏତେ ଚଞ୍ଚଳ ପୃଥିବୀରେ ପହଞ୍ଚି ଗଲି ( ଚାରିଆଡ଼କୁ ଚାହିଁ ) ବାଃ, ଏ ତ ଗୋଟିଏ ମନୋହର ଉପବନ, ଏ ତମାଳ ଗଛ ମୂଳରେ ହରି ହରି କହି ଉନ୍ମତ୍ତ ତୁଲ୍ୟ କିଏ ଗୋଟିଏ ଦଉଡ଼ା ଦଉଡ଼ି କରୁଛି, ହରି-ବୋଲ, ହରିବୋଲ ( ନିରୀକ୍ଷଣ କରି ) ଏ ତ ଗୋଟିଏ ବାଳକ, ଏ କଅଣ କୌଣସି ଦେବକୁମାର ନା, ନା, ଏହାର ତ ନିମେଷ ଅଛି, ବୋଧହୁଏ କୌଣସି ରାଜକୁମାର ହୋଇପାରେ, ଦେଖାଯାଉ, ଏ ତ ମୋର ଅଭିମୁଖରେ ଆସୁଛି, ହରିବୋଲ, ହରିବୋଲ ।

ଧ୍ରୁବ—( ନିକଟକୁ ଆସି ) ହେ ପ୍ରଭୁ ଦୁଃଖୀର ସହାୟ ଦୟାମୟ ହରି ! କାହିଁ ଥିଲ ? ପ୍ରଣାମ !

ନାରଦ—ବତ୍ସ ! ଚିରଂଜୀବ, ତୁମ୍ଭେ କିଏ ?

ଧ୍ରୁବ—ଆଗ ଆପଣଙ୍କ ସୁଧା ମଧୁର ନାମ ଶୁଣାଇ ଏ ଅଧମର କର୍ଣ୍ଣକୁ ପବିତ୍ର କରନ୍ତୁ ତାପରେ ମୁଁ କିଏ କହିବି ।

ନାରଦ—ବତ୍ସ ! ମୁଁ ହରି ନୁହେଁ, ହରିଙ୍କର ସେବକ, ତାଙ୍କର ନାମ କୀର୍ତ୍ତନ କରେଁ, ମୋର ନାମ ନାରଦ ।

ଧ୍ରୁବ—(ସ୍ୱଗତ) ଯେବେ ମାମା କହୁଥିଲେ ନାରଦ ବ୍ରହ୍ମାଙ୍କର ପୁତ୍ର, ସ୍ୱର୍ଗର ଋଷି, ଯାହାହେଉ ମୋର ପୂର୍ବଭାଗ୍ୟରୁ ଦେଖା ମିଳିଲା (ପ୍ରକାଶ୍ୟେ) ମହାମୁନେ ! ଆପଣଙ୍କ ଦର୍ଶନ କରି କୃତାର୍ଥ ହେଲି, ମୁଁ ରାଜା ଉତ୍ତାନପାଦଙ୍କର ପୁତ୍ର, ମୋର ନାମ ଧ୍ରୁବ ।

ନାରଦ—(ସ୍ୱଗତ) ମହାଜନମାନେ ଯେ କହନ୍ତି "ଆକରେ ପଦ୍ମରାଗାଣାଂ ଜନ୍ମ କାଚମଣେଃ କୁତଃ" ଏହା ନିଶ୍ଚୟ । ପବିତ୍ର କୁଳରେ ଜନ୍ମ ନ ହେଲେ କି ଏତେ ଅଳ୍ପବୟସ୍କ ଶିଶୁ ଏପ୍ରକାର କହନ୍ତା (ପ୍ରକାଶ୍ୟେ) ହଁ, ମୁଁ ତୁମ୍ଭର ଆକୃତିରୁ ରାଜକୁମାର ବୋଲି ଅନୁମାନ କରିଥିଲି, ତୁମ୍ଭେ ଶିଶୁ, ଏତେ ରାତ୍ରରେ ଏହି ନିର୍ଜନ ଅରଣ୍ୟରେ ଏକାକୀ କି ଉଦ୍ଦେଶ୍ୟରେ ବୁଲୁଛ ?

ଧ୍ରୁବ—ତପ କରିବାକୁ ଯାଉଥିଲି, ଭାବିଲି, ମାମା ମତେ ମନା କରୁଥିଲେ ତାଙ୍କ କଥା ନ ମାନି ଲୁଚି ଚାଲି ଆସିଲି ତପ କିପରି କରନ୍ତି ତାଙ୍କୁ ପଚାରି ପାରିଲି ନାହିଁ, ଫେରି ଗଲେ ତ ସେ ମତେ ଆଉ ଛାଡ଼ି ଦେବେ ନାହିଁ କାହାକୁ ପଚାରିବି ? ଏହି ଚିନ୍ତା କରୁଥିଲି, ମୋ ଭାଗ୍ୟକୁ ଆପଣ ଆସି ପହଞ୍ଚିଗଲେ, ତାହା କି ପ୍ରକାର ହୁଏ ଦୟା କରି କହି ଦିଅନ୍ତୁ ।

ନାରଦ—(ସ୍ୱଗତ) ଏ ବାଳକର ତପସ୍ୟା କରିବାର ଉଦ୍ଦେଶ୍ୟ କଅଣ ? (ଧ୍ୟାନ କରି ପ୍ରକାଶ୍ୟେ) ତୁମ୍ଭେ ବିମାତାର କଟୁ

ବାକ୍ୟରେ ଅପମାନ ପାଇ ଉଚ୍ଚପଦ ଲଭିର ଇଚ୍ଛା କରିଛ ।

ଧ୍ରୁବ—ଆଜ୍ଞା ହଁ, ଆପଣ ତ ସବୁ ଜାଣନ୍ତି, କିପରି ତାହା ସିଦ୍ଧ ହେବ କହନ୍ତୁ ।

ନାରଦ—ବତ୍ସ ! ବିଶ୍ୱାମିତ୍ର ପ୍ରଭୃତି ବଡ ବଡ଼ ମହାତ୍ମାମାନେ ତପ କରି ସିଦ୍ଧିଲାଭ କରିପାରି ନାହାନ୍ତି, ତୁମ୍ଭର ତ ବୟସ ଦେଖୁଛି ପାଞ୍ଚବର୍ଷରୁ ଅଧିକ ହେବ ନାହିଁ, ବର୍ତ୍ତମାନ ଖେଳିବାର ସମୟ, ତପସ୍ୟାର ସ୍ଥାନ ହିଂସ୍ରଜନ୍ତୁ ପରିପୂର୍ଣ୍ଣ ନିର୍ଜନ ନିବିଡ଼ ଅରଣ୍ୟ । ତୁମ୍ଭେ ସେ ସ୍ଥାନ ଦେଖିଲେ ଭୟ କରିବ, ବିଶେଷରେ ତୁଚ୍ଛ ପଦ ପାଇଁ କଠିନ ତପସ୍ୟା କରିବା ଅନୁଚିତ, ଏ ତୁମ୍ଭର ମାନାପମାନର ଅବସ୍ଥା ନୁହେଁ, ତୁମ୍ଭେ ଜନନୀର ଅଜ୍ଞାତରେ ଚାଲି ଆସିଛ, ନିଦ୍ରା ଭାଙ୍ଗିଲେ ସେ ଅଭାଗିନୀର ଦଶା କିପରି ହେବ, ଯାଅ ଘରକୁ ଫେରି ଯାଅ, ଉପଯୁକ୍ତ ବୟସ ହେଲେ ତପଦ୍ୱାରା ମୋକ୍ଷଲାଭର ଚେଷ୍ଟା କରିବ, ତପସ୍ୟା ଅନାୟାସ ସାଧ୍ୟ ନୁହେଁ ।

ଧ୍ରୁବ—ମୁନିବର ! ସମୁଦ୍ରରେ ନ ବୁଡ଼ିଲେ କି ମୁକ୍ତାର ଉତ୍ତୋଳନ ହୋଇ ପାରେ ? କ୍ଷମା କରନ୍ତୁ, ଆପଣ ଯେଉଁ ସମସ୍ତ ସଦୁପଦେଶ ଦେଲେ ତାହା ମୋର ହୃଦୟରେ ରହୁ ନାହିଁ, ବିମାତାଙ୍କ କଟୁ ବଚନ ବାଣରେ ସେ ଛିନ୍ନ ଭିନ୍ନ ହୋଇ ଯାଇ ଥିବାରୁ ତହିଁରୁ ଗଳି ପଡ଼ୁଛି ହରିପଦ ଦର୍ଶନ ବିନା ଅନ୍ୟ କାହିଁରେ ମୋର ଇଚ୍ଛା ନାହିଁ, ହରିଙ୍କୁ ନ ପାଇଲେ ମୁଁ ଘରକୁ ଫେରିଯିବି ନାହିଁ, ଏହା ମୋର ଦୃଢ଼ ସଙ୍କଳ୍ପ, ହରି ମୋର ମାତା, ହରି ମୋର

ପିତା, ହରି ମୋର ଜ୍ଞାନ, ହରି ମୋର ଧ୍ୟାନ, ହରି ମୋର ବନ୍ଧୁ, ହରି ମୋର ପ୍ରାଣ, ଜନନୀ ଜନକ ସୁଖ ଛାଡ଼ିଛି, ତ୍ରିଭୁବନ ଛାଡ଼ିବି, ପ୍ରାଣ ପଛକେ ଛାଡ଼ିବି, ହରିଙ୍କୁ ଛାଡ଼ିବି ନାହିଁ, ଦୟା କରି ହରିଙ୍କୁ ପାଇବାର ବାଟ କହି ଦିଅନ୍ତୁ ।

ନାରଦ—(ସ୍ୱଗତ) ଓହୋ ! କ୍ଷତ୍ରିୟ ଜାତିର କି ଦୁର୍ବିସହ ତେଜ, କେତେ ଅଭିମାନ, ଦେଖ ଏହି ଖେଳାଳି ବାଳକଟି ଅଳ୍ପ ବୟସ ଦୃଢ଼ପ୍ରତିଜ୍ଞ ହୋଇଛି, (ପ୍ରକାଶ୍ୟେ) ବତ୍ସ ! ମନୁଷ୍ୟ ସ୍ଥିର ପ୍ରତିଜ୍ଞ ନ ହେଲେ କୌଣସି କାର୍ଯ୍ୟ ସାଧନ କରିପାରେ ନାହିଁ, ତୁମ୍ଭର ପ୍ରତିଜ୍ଞା ଆଉ ହରିଭକ୍ତି ଦେଖି ମୁଁ ଅତିଶୟ ପ୍ରୀତ ହେଲି, ତୁମ୍ଭ ସାକ୍ଷାତ୍କାରରେ ନିଜକୁ ଧନ୍ୟ ମନେ କରୁଛି, ନିଅ ଏହି ମନ୍ତ୍ର ଗ୍ରହଣ କର (ଧ୍ରୁବଙ୍କ କର୍ଣ୍ଣରେ ମନ୍ତ୍ର କଥନ) ଏହି ଉତ୍ତର ମୁଖରେ ଯାଅ, ଯମୁନା ନଦୀକୂଳରେ ଜଗଦୀଶ୍ୱରଙ୍କର ଲୀଳାକ୍ଷେତ୍ର ମନୋହର ମଧୁବନ ଅଛି, ସେଠାରେ ତ୍ରିକାଳ ସ୍ନାନପୂର୍ବକ ଜିତେନ୍ଦ୍ରିୟ ହୋଇ ଏହି ଧ୍ୟାନ କର,

"ଇନ୍ଦ୍ରନୀଳୋତ୍ପଳ ନୀଳକାନ୍ତିଃ
ପୀତାମ୍ବରଃ କୌସ୍ତୁଭକଣ୍ଠଭୂଷଃ,
ରାଜୀବପତ୍ରାୟତ ଚାରୁନେତ୍ରୋ
ଧ୍ୟେୟସ୍ଥିରଂ ବେଣୁଧରୋ ମୁରାରିଃ"

ତହିଁ ଉତ୍ତାରୁ ନିରନ୍ତର ମନ୍ତ୍ର ଜପ । ଏହାର ନାମ ବାସୁଦେବ ମନ୍ତ୍ର, ଏ ମହାମନ୍ତ୍ରପ୍ରଭାବରେ ତୁମ୍ଭର ମନୋରଥ ନିର୍ବିଘ୍ନରେ ସିଦ୍ଧ ହେବ ।

ଧ୍ରୁବ—ଯେ ଆଜ୍ଞା, ପ୍ରଣାମ, (ଉକ୍ତ ଧ୍ୟାନ ପାଠ କରି) ଓଁ ନମୋ ଭଗବତେ ବାସୁଦେବାୟ, ନମୋ ଭଗବତେ ବାସୁଦେବାୟ, ନମୋ ଭଗବତେ ବାସୁଦେବାୟ (ଧୀରେ ଧୀରେ ପ୍ରସ୍ଥାନ) ।

ନାରଦ—(ଉପରକୁ ଚାହିଁ) ସନ୍ଧ୍ୟା କରିବାର ସମୟ ତ ହୋଇ ନାହିଁ, ଆଜ ଉପଯୁକ୍ତ ଶିଷ୍ୟଲାଭରେ ହୃଦୟ ଆନନ୍ଦ-ସମୁଦ୍ରରେ ନିମଗ୍ନ ହୋଇଛି, ଆଜି ଏହି ଉପବନସ୍ଥଳଟି ଅତ୍ୟନ୍ତ ମନୋରମ ହୋଇଛି, ଏଠାରେ ବସି ଗୋଟିଏ ଗାନ କରି ତଦନନ୍ତର ଗଙ୍ଗାକୂଳକୁ ଯିବା । (ଉପବେଶନ)

ଗୀତ ।

ହରି ମଧୁମର୍ଦ୍ଦନ ! ବରଦ ଜନାର୍ଦ୍ଦନ !
ମମ-ଭବ-ଭୟ-ଦବ-ତାପଂ ।
ଜଳଧର ବିଗ୍ରହ ! କୃତ-ବଳ ନିଗ୍ରହ !
ଦଦ ପଦମମରବିମୁଗ୍ଧପଂ । ଧ୍ରୁବପଦଂ ।
ଧରଧର ! ମାଧବ ! ମୁରହର ! ଯାଦବ—
କୁଳ ଶତଦଳ କୁଳ ଭାନୋ !
ଅଜିତ ! ପୁରାତନ— ପୁରୁଷ ! ସନାତନ !
ପଟହଜିତ ହାଟକ ଭାନୋ ! ।୧।
ତ୍ରିଭୁବନ କାରଣ ! ମୁନିଗଣ ତାରଣ !
ନରକଜିତ ଦରଦରପାଣେ !
ସତତମକୁଣ୍ଠିତ— କରୁଣ ! ବଲୁଣ୍ଠିତ—
ବ୍ରଜଜନଜନ ଦଧିପାଣେ ! ।୨।

ରାଜା—(ପ୍ରବେଶ କରି) ମହର୍ଷେ ! ନମସ୍କାର ।

ନାରଦ—(ଚମକିପଡ଼ି) କିଏ, ମହାରାଜ ଉତ୍ତାନପାଦ ? ରାଜାନୃସିଂହ, ବସ ବସ ସବୁ କୁଶଳତ ?

ରାଜା—(ବସି) ଆପଣଙ୍କ ଶୁଭାଶୀର୍ବାଦରୁ ସମସ୍ତ କୁଶଳ ।

ନାରଦ—ତୁମ୍ଭେ ଏତେବେଳେ କେଉଁଠାକୁ ଯାଉଛ ? ତୁମ୍ଭ ମୁହଁ କାହିଁକି ଶୁଖି ଯାଇଛି ?

ରାଜା—ଆଜ୍ଞା, ମୁଁ ମୂଢ଼, ସ୍ତ୍ରୀଜିତ, କଠିନହୃଦୟ, ଅଜ୍ଞ ବାଳକ ଧ୍ରୁବର ଅପମାନରେ କିଛି ପ୍ରତୀକାର କରି ପାରିଲି ନାହିଁ, ସ୍ୱପ୍ନରେ ଦେଖିଲି, ସେ ତପସ୍ୟା କରିବାପାଇଁ ସିଂହ-ବ୍ୟାଘ୍ର ପୂର୍ଣ୍ଣ ବନକୁ ଯାଇଛି, ଆହା ! ତାର ଫେରିଅସିବା ସମୟର ସଜଳ ନୟନ ମୋର ଚିତ୍ତରେ ଭିଷମ ଯନ୍ତ୍ରଣା ଦେଉଛି, ତାହାର ଅନ୍ୱେଷଣନିମନ୍ତେ ଗୋପନରେ ଆସି ଶ୍ରୀଚରଣର ଦର୍ଶନ ପାଇଲି, ପୁଣ୍ୟ ନ ଥିଲେ ଆପଣଙ୍କର ଦେଖା ମିଳେ ନାହିଁ, ଆଜ ମୋର ସୁପ୍ରଭାତ ।

ନାରଦ—ମହାରାଜ ! କିଛି ଚିନ୍ତା କର ନାହିଁ, ଅଳ୍ପସମୟ ପୂର୍ବେ ଏହିଠାରେ ତୁମ୍ଭ କୁଳଚନ୍ଦ୍ର ଧ୍ରୁବଙ୍କ ସହିତ ମୋର ଦେଖା ହୋଇଥିଲା, ସବୁ ଶୁଣିଛି, ତୁମ୍ଭ ବଂଶର କଥା କିଏ ପଚ୍ଛରେ ? ସେ ଇନ୍ଦ୍ରାଦି ଦେବଦୁର୍ଲ୍ଲଭ ପଦ ଆଉ ଶ୍ରୀନାରାୟଣଙ୍କର ଦର୍ଶନ ଲାଭ କରି ଆଜଠୁଁ ଛମାସରେ ଫେରି ଅସିବେ, ତାଙ୍କର ପବିତ୍ର ଯଶରେ ତ୍ରୈଲୋକ ପୂର୍ଣ୍ଣ ହେବ, ଯାଅ, ନଗରକୁ ଫେରିଯାଅ ।

ରାଜା—ଆଜ୍ଞା, ନଗରକୁ ଯାଇଁ କଅଣ କରିବି ? ମୋ କୁଳମଣିକି ନ ଦେଖିବାଯାଏ କି-ରାଜକାର୍ଯ୍ୟରେ ମନ ଲାଗିବ, ଯାଉଛି, ମନ୍ତ୍ରୀଙ୍କୁ ରାଜ୍ୟଭାର ଦେଇ ତାହାର ଅପେକ୍ଷାରେ ଏହିଠାରେ ରହିବି ଏବଂ ସଙ୍ଗେ ସୁନୀତିଙ୍କ ନିକଟରେ କ୍ଷମାପ୍ରାର୍ଥୀ ହେବି ।

ନାରଦ—ଭଲ କଥା, ପ୍ରଭାତ ହେଲାଣି ମୁଁ ମଧ୍ୟ ଯାଉଛି, ଭାଗୀରଥୀରେ ପ୍ରାତଃକୃତ୍ୟ କରିବି । (ଉଭୟଙ୍କର ପ୍ରସ୍ଥାନ)

ପଟପରିବର୍ତ୍ତନ ।

---

## ଦ୍ୱିତୀୟ ଦୃଶ୍ୟ ।

( ମନ୍ତ୍ରୀଙ୍କର ଗୃହ ସମ୍ମୁଖ )

ମନ୍ତ୍ରୀ—(ଚିନ୍ତାମଗ୍ନ) ଆଜ ରାଜାଙ୍କର ଏ ପ୍ରକାର ଇଚ୍ଛା କାହିଁକି ହେଲା? ପଚାରିଲେ, କହିଲେ "ମୋର ବିଶେଷ ଆବଶ୍ୟକ ଅଛି" ବିଶେଷ ଆବଶ୍ୟକ କଅଣ ? କାହାଠାରୁ ତଥ୍ୟ ଜଣା ପଡ଼ିବ ? (ନେପଥ୍ୟକୁ ଚାହିଁ) ହେଇ ରାଜାଙ୍କର ଦ୍ୱିତୀୟ ହୃଦୟ ବସନ୍ତକ ଶର୍ମା ଆସୁଛନ୍ତି, ଏ ସବୁ କହି ପାରିବେ ।

ବଟୁ—(ପ୍ରବେଶ କରି) କି ମନ୍ତ୍ରୀ ମହାଶୟ ! ଆଜ ତୁମ୍ଭର କାହିଁକି ଭୋଜି ଦେଉଛ ?

ମନ୍ତ୍ରୀ—ଭୋଜିଦେବାର କଣ ଦେଖିଲ କି ?

ବଟୁ—ମୁଁ ତ ଶୁଣିଲି ମହାରାଜ ସୁଦ୍ଧା ତୁମ୍ଭ ଘରକୁ ଆସୁଛନ୍ତି; ମତେ କାହିଁକି ଲୁଚଉଛ ? ମୁଁ କି ତୁମ୍ଭମାନଙ୍କଠାରୁ ବେଶି ଖାଇବି ?

ମନ୍ତ୍ରୀ—ମହାଶୟ ! ଭୋଜି କଥା ଆପଣଙ୍କୁ କେହି ପରିହାସରେ କହି ଦେଇଛି ।

ବଟୁ—ହଉ ହଉ, ରାଜା କାହାନ୍ତି ?

ମନ୍ତ୍ରୀ—ଏଠାରେ ନାହାନ୍ତି ।

ବଟୁ—ଏହା ବି ମିଥ୍ୟା ?

ମନ୍ତ୍ରୀ—ନା, ଏହା ମିଥ୍ୟା ନୁହେ, ଏଠାରୁ ଗଲେଣି ।

ବଟୁ—କେଉଁଠାକୁ ?

ମନ୍ତ୍ରୀ—ଆପଣ ଜାଣି ନାହାନ୍ତି ?

ବଟୁ—ନା,

ମନ୍ତ୍ରୀ—ମରଣ କି ଯମର ସୁଦ୍ଧା ଅଜ୍ଞାତ ?

ବିଦୂ—କିପରି ?

ମନ୍ତ୍ରୀ—ରାଜା କେଉଁଠାକୁ ଗଲେ ଆପଣ ଯେ ଜାଣି ନାହାନ୍ତି ବୋଲି କହୁଛନ୍ତି ।

ବିଦୂ—ହଁ, ସତ କଥା ମୁଁ ଜାଣିନାହିଁ । ତୁମ୍ଭେ ଜାଣ ?

ମନ୍ତ୍ରୀ—ରାଜା ବନକୁ ଯାଇଛନ୍ତି ।

ବିଦୂ—ମୃଗୟା ନିମନ୍ତେ ?

ମନ୍ତ୍ରୀ—ନା, ନା, ବାସ ନିମନ୍ତେ ।

ବିଦୂ—ରାଜା କି ବାନପ୍ରସ୍ଥାଶ୍ରମ ଗ୍ରହଣ କରିଛନ୍ତି ?

ମନ୍ତ୍ରୀ—ତା ନୁହେଁ, ସେପରି ହୋଇଥିଲେ ଯୁବରାଜଙ୍କୁ ରାଜ୍ୟଭାର ଦେଇ ଯାଇଥାନ୍ତେ, କିନ୍ତୁ ଛମାସ ନିମନ୍ତେ ମତେ ଦେଇ ଯାଇଛନ୍ତି ।

ବିଦୂ—କାରଣ ?

ମନ୍ତ୍ରୀ—ଆପଣ ତ କାରଣ ଜାଣି ନାହାନ୍ତି, ମୁଁ ଜାଣିବି କିପରି ?

ବିଦୂ—ହଁ, ହଁ, ସେ ଯେଉଁ ନିମନ୍ତେ ବନବାସୀ ହୋଇଛନ୍ତି ଜଣା ପଡ଼ିଲାଣି ।

ମନ୍ତ୍ରୀ—(ସାଗ୍ରହେ) ଏଁ ମୁଁ ତାହା ଶୁଣି ପାରିବି କି ?

ବିଦୂ—ଶୁଣିବ ନାହିଁ କାହିଁକି ? ସେ କଅଣ ଲୁଗୁଛପା ଅଛି ?

ମନ୍ତ୍ରୀ—କଅଣ ?

ବିଦୂ—ଆହେ ! କାଲି ପ୍ରମଦବନରେ ମହାରାଣୀ ସୁରୁଚି ଧ୍ରୁବକୁ ରାଜାଙ୍କ କୋଳରେ ବସେଇ ଦେଲେ ନାହିଁ, ରାଜା ତ ଡରେ ତାଙ୍କୁ କିଛି କହି ପାରିଲେ ନାହିଁ, ରୁଷିକ [illegible] ବନକୁ ପଳେଇ ଯାଇଛନ୍ତି, ଚାଲ ତାଙ୍କୁ ଖୋଜି ଦେଖ [illegible] ଆସିବା ।

ମନ୍ତ୍ରୀ—ମହାଶୟ ! ମହାରାଜ ଆମଭୁମ ପର ରୁଷି ଯିବାର ଲୋକ ନାହାନ୍ତି, ସେ କୌଣସି ବିଶେଷ ଉଦ୍ଦେଶ୍ୟରେ ବନବାସୀ ହୋଇଛନ୍ତି, ଆପଣ ଯାଆନ୍ତୁ, ମୁଁ ରାଜସଭାକୁ ଯାଉଛି, ପରେ ସବୁ ଜଣା ପଡ଼ିବ ।

(ଉଭୟଙ୍କର ପ୍ରସ୍ଥାନ)

(ପଟପରିବର୍ତ୍ତନ

———

ତୃତୀୟ ଦୃଶ୍ୟ ।

ବୈକୁଣ୍ଠ ।

(ଲକ୍ଷ୍ମୀ ଓ ନାରାୟଣ)

ନାରା—ଲକ୍ଷ୍ମୀଦେବି ! ମୁଁ ତ ଦେଖୁଛି ସନ୍ତାନମାନେ ତୁମ୍ଭର ବେଶ୍ ସମାଦର କରୁଛନ୍ତି, ସେଥିରେ ପୁଣି ଆଜି ଏଠାରେ କାଲି ସେଠାରେ ଅନ୍ନ ଅନ୍ନ ବୋଲି ହାହାକାର ଉଠୁଛି ପଡ଼ୁଛି କାହିଁକି ?

ଲକ୍ଷ୍ମୀ—ପ୍ରାଣେଶ୍ୱର ! ସେଥିରେ କି ମୋହର କିଛି ଦୋଷ ଅଛି ?

ନାରା—ଆଉ କାହାର ?

ଲକ୍ଷ୍ମୀ—ସେହି ଅଜ୍ଞ ଲୋକମାନଙ୍କର ।

ନାରା—କିପରି ?

ଲକ୍ଷ୍ମୀ—ସେମାନେ ଯେ ଆଜିକାଲି ନିଜ ନିଜର କର୍ତ୍ତବ୍ୟ ଛାଡ଼ି କେବଳ ଦାସତ୍ୱକୁ ଜୀବିକା କରିଛନ୍ତି, ସେଥିରେ ମୋର ଅପ୍ରବୃତ୍ତି କଅଣ ?

ନାର—ହଁ, "ସ୍ୱଧର୍ମେ ମରଣଂ ଶ୍ରେୟଃ ପରଧର୍ମୋ ଭୟାବହଃ" ଏହା ମୁଁ ବାରମ୍ବାର କହି ଆସୁଥିଲେ ମୂଢ଼ା ତହିଁରେ କର୍ଣ୍ଣପାତ ନ କରି ଅକାଳରେ ବିନଷ୍ଟ ହେଉଛନ୍ତି । ବଡ଼ ବିଚିତ୍ର କଥା !

ଲକ୍ଷ୍ମୀ—ପ୍ରିୟତମ ! ଆପଣତ ଜାଣନ୍ତି, ଆଗ୍ରହ ମୋର ଆତ୍ମୟ, ତାଙ୍କୁ ଛାଡ଼ ମୁଁ ଦଣ୍ଡେ ରହିପାରେ ନାହିଁ, ଯେଉଁମାନେ ଆଗ୍ରହ ଛାଡ଼ି କେବଳ ଅର୍ଥଲୋଭରେ ମୋର ପୂଜା କରନ୍ତି, ମୁଁ ସେମାନଙ୍କର ପୂଜା ଗ୍ରହଣ କରେ ନାହିଁ କିମ୍ବା ତାଙ୍କର ମନୋରଥ ପୂର୍ଣ୍ଣ କରି ପାରେ ନାହିଁ ।

ନାର—ତାହା ହେବ କପରି ? ଦୁଃଖର କଥା, "ଆଗ୍ରହରେ ବସତେ ଲକ୍ଷ୍ମୀଃ" ଏହା ଜାଣି ଶୁଣି ମୂଢ଼ା ଲୋକେ ଅପଥଗାମୀ ହୋଇ ଯେଉଁ ଦୁର୍ଦ୍ଦଶା ଭୋଗ କରୁଛନ୍ତି, ତାହା ଦେଖିଲେ ହୃଦୟ ବିଗଳିତ ହୋଇଯାଏ, କର୍ତ୍ତବ୍ୟ କଣ ?

ଲକ୍ଷ୍ମୀ—ଏହି ହେତୁରୁ ତ ଆପଣ ଦୟାମୟ ଉପାଧି ଧାରଣ କରିଛନ୍ତି, ତେବେ ଆଉ ଗୋଟିଏ କଥା—

ନାର—କଅଣ ?

ଲକ୍ଷ୍ମୀ—ପ୍ରାଣେଶ୍ୱର ! ଆପଣଙ୍କୁ ଲୋକେ ଯେ ନୀଳମଣି ବୋଲି କହନ୍ତି, ତାହା ମିଥ୍ୟା ନୁହେ, ଆପଣଙ୍କ ହୃଦୟ ଲୌହ ଅପେକ୍ଷା ଅଧିକ କଠିନ ।

ନାର—ଦେବି ! ମୁଁ ତ ତୁମ୍ଭ ପ୍ରତି କୌଣସି କଠୋର ବ୍ୟବହାର କରି ନାହିଁ, ବୃଥାରେ କାହିଁକି ତିରସ୍କାର କରୁଛ ?

ଲକ୍ଷ୍ମୀ—ମୁଁ କି ମୋଠାରେ କଠିନ ବ୍ୟବହାର କଲେ ବୋଲି କହିଲି ?

ନାର—ଆଉ କାହାଠାରେ ?

ଲକ୍ଷ୍ମୀ—ବୁଝି ପାରୁ ନାହାନ୍ତି, ପାଞ୍ଚବର୍ଷର ଶିଶୁ ଧ୍ରୁବ ଆଜକୁ ଛ ମାସ ହେଲା ନିରାହାର ରହି ଅନବରତ ଡାକୁଛି, ସେ ଯେଉଁ କଷ୍ଟରେ ଅଛି, ତାହା ଦେଖିଲେ ପଥର ସୁଦ୍ଧା ତରଳି ଯିବ, ତଥାପି ତାଠାରେ ଆପଣଙ୍କର ଦୟା ହେଉ ନାହିଁ ?

ନାର—ଦେବି ! ଏଇଥି ପାଇଁ ମତେ ଏପରି କହୁଛ ?

ଲକ୍ଷ୍ମୀ—ଆଉ କଅଣ !

ନାର—ପ୍ରିୟେ ! ବିନା ଦୁଃଖରେ ସୁଖଲାଭ ହୁଏ ନାହିଁ, ଧ୍ରୁବ ଯେ ପ୍ରକାର କଠିନ ତପ କରୁଛି, ତାହାର ଉପଯୁକ୍ତ ପଦ ମୁଁ ଆଗରୁ ସ୍ଥିର କରି ରଖିଛି ?

ଲକ୍ଷ୍ମୀ—ତେବେ ଶୀଘ୍ର ତାକୁ ଦେଉ ନାହାନ୍ତି କାହିଁକି ?

ନାର—(ସ୍ୱଗତ) ଓଃ ସ୍ତ୍ରୀ ଜାତିର ହୃଦୟ କେଡ଼େ କୋମଳ, ପରର ଦୁଃଖ ଦର୍ଶନରେ ସହସା ଆକୁଳ ହୋଇପଡ଼େ, (ପ୍ରକାଶ୍ୟେ) ପ୍ରିୟେ ! ଟିକିଏ ପରୀକ୍ଷା କରି ତାପରେ ପ୍ରଦାନ କରିବି ।

ଲକ୍ଷ୍ମୀ—ନାଥ ! ସେ କି କପଟ ତପସ୍ୟା କରୁଚି ?

ନାର—ନା,

ଲକ୍ଷ୍ମୀ—ତେବେ ପରୀକ୍ଷା କାହିଁକି ?

ନାର—ଦେବି ! ସେହିତ ମୋର ନିୟମ ।

ଲକ୍ଷ୍ମୀ—ତେବେ କି ପରୀକ୍ଷା କରିବେ, ଆଜ୍ଞା କର, ତାର ଅଭୀଷ୍ଟ ସିଦ୍ଧି କରନ୍ତୁ ।

ନାର—ଦେବି ! ତାର ପରୀକ୍ଷା ମୋତେ କରିବାକୁ ହେବ ନାହିଁ, ଦେବବୃନ୍ଦ ଭୀତ ହୋଇ ସର୍ବହରକୁ ପଠେଇଛନ୍ତି, ସେ

ଧ୍ରୁବର ତପସ୍ୟା ଭଙ୍ଗ କରିବା ପାଇଁ ମଧୁବନକୁ ଯାଉଛି, ଚାଲ ଆକାଶରେ ରହି ଦେଖିବା ସେ ଯାଇଁ କଣ କରବ

ଲକ୍ଷ୍ମୀ—ହଉ ଆସନ୍ତୁ ! ( ଉଭୟଙ୍କର ପ୍ରସ୍ଥାନ । )

ପଟ ପରିବର୍ତ୍ତନ ।

---

## ଚତୁର୍ଥ ଦୃଶ୍ୟ ।

### ମଧୁବନ ।

( ଧ୍ୟାନମଗ୍ନ ଧ୍ରୁବ ଏକପାଦରେ ଦଣ୍ଡାୟମାନ. )

ସର୍ବହର—( ପ୍ରବେଶ କରି ) ପରର ସର୍ବନାଶ କରିବାହିଁ ମୋର କାର୍ଯ୍ୟ, ସାମାନ୍ୟ କୀଟଠାରୁ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ପର୍ଯ୍ୟନ୍ତ ମୋର କରାଳ କବଳରୁ ରକ୍ଷା ପାଇବାର କାହାର ଶକ୍ତି ନାହିଁ, ଏହି ହେତୁରୁ ଇନ୍ଦ୍ରାଦି ଦେବତାବୃନ୍ଦ ମତେ ଅନୁରୋଧ କରିଛନ୍ତି, "ସର୍ବହର ! ଉତ୍ତାନପାଦ ରାଜପୁତ୍ ଧ୍ରୁବ ଆମ୍ଭମାନଙ୍କଠାରୁ ବଳି ଉଚ୍ଚପଦ ପାଇବା ନିମନ୍ତେ ନିରାହାରରେ ଠିଆ ହୋଇ ମଧୁବନରେ କଠୋର ତପ କରୁଛି, ତୁମ୍ଭେ ତାର ବିଘ୍ନ କରି ଅମ୍ଭର ମନୋବ୍ୟଥା ଦୂର କର" ଓହୋ ! ଦେବତାମାନେ ବି କେବେ ପର ଶ୍ରୀକାତରତା ଛାଡ଼ିଲେ ନାହିଁ । ଆଜ କ୍ଷୁଦ୍ରମାନବଙ୍କ କଥ କଅଣ କହିବା, ଅଚ୍ଛା, ସବୁଦେବତ ଏ କାର୍ଯ୍ୟରେ କନ୍ଦର୍ପ ବା ଅପସରଣ ନିଯୁକ୍ତ ହୋଇଆନ୍ତି, ଆଜ ମୁଁ କାହିଁକି ( ଚିନ୍ତାକରି ) ଆହା ଜାଣିଲ ଜାଣିଲ, ଧ୍ରୁବ ବାଳକ ସେମାନଙ୍କ ଦ୍ୱାରା ତାର ତପସ୍ୟା ଭଙ୍ଗ ହୋଇ ପାରବ ନାହିଁ, ମୋର ଅସାଧ୍ୟ କିଛି ନାହିଁ, ପିଲମାନେ ଭୂତ ପ୍ରେତଙ୍କୁ ବଡ଼ ଭୟ କରନ୍ତି, ସେହିଥିରୁ ଦୁଇ ଚାରିଟି ପଠେଇ ଦେଲେ ଚମକି ପଡ଼ିବ, (ଚାରିଆଡ଼କୁ ଚାହିଁ

ଏହି ତ ମଧୁବନ, ଏହି ବାଳକ ତପସ୍ୱୀଟି ଧ୍ରୁବ ହେବ ପରି, ଏହାର ତ ଭାରି ତେଜ, ଅନ୍ତର ଏକାଗ୍ରତା ଦେଖା ଯାଉଛି, ଯାହାହେଉ ତହିଁରେ ମୋର ଭାବନା କଅଣ ? ମୁଁ ତ ପୁଷ୍ପବାଣ ନୁହେଁ ଯେ ମହାଦେବଙ୍କ ପରି ମତେ ଏ ନୟନାନଳରେ ଭସ୍ମ କରିଦେବ, ମୋର ତ ହାତ ଲେଉଟିଲେ ପୃଥିବୀ ଲେଉଟି ପଡ଼ିବ, କେତେ ବଡ଼ ବଡ଼ ବୀର ମୋଦାଉରୁ ବଳି ଯାଇ ନାହାନ୍ତି, ଏ ବାଳକକୁ ପଗୃରେ କଏ ! ଯାଉଛି ଦେବତାଙ୍କ ଅନୁଚରଧର୍ଷାର ଉଦ୍‌ଯୋଗ କରେଁ ।

( ପ୍ରସ୍ଥାନ )

( ଭୂତ, ପ୍ରେତ, ଡାକିନୀ, ଶାକିନୀର ପ୍ରବେଶ, କାଠ ବଜେଇ ଗାଇବା, ନାଚିବା ଓ ବିକଟ ମୁଖ ଦେଖାଇବା )

ଗୀତ ।

ହିଲମିଲି ଚିଲମିଲି ହିଲମିଲି ଚିଲମିଲି
ଅଗେ ଅଗେ ଖାନା ।
ଦମ ଦମ ଝମ ଝମ ଦମ ଦମ ଝମ ଝମ
ବମ ବମ ଧାଁନା ।
ହାଉ ହାଉଁ ଖାଉଁ ଖାଉଁ ହାଉ ହାଉଁ ଖାଉଁ ଖଉଁ
ଘାଉଁ ଘାଉଁ ଘାଁନା ।
ଢରୁ ଢରୁ ହୁରୁ ହୁରୁ ଢରୁ ଢରୁ ହୁରୁ ହୁରୁ
ହୁରୁ ହୁରୁ ଗୁଁନା ।
ଚଡ଼ମଡ଼ କଡ଼ମଡ ସଡ଼ ସଡ଼ ବଡ଼ ବଡ଼
ଚଡ଼ ଚଡ଼ ଧାଁନା ।

( ଧ୍ୟାନଭଙ୍ଗ ନ ହେବାରୁ ପ୍ରସ୍ଥାନ )

ସର୍ବହରି—( ପ୍ରବେଶ କରି ) କି, ମୋର ଉଦ୍‌ଯୋଗ ବିଫଳ, କ୍ଷୁଦ୍ର ମାନବ ଶିଶୁ ନିକଟରେ ମୁଁ ପରାଜିତ, ନା, ତା କଦାପି ହୋଇ ନ ପାରେ, ସର୍ବହର ସନ୍ନିକଟରେ ପରାଜୟ ସ୍ୱୀକାର କରିବାର ଲୋକ ନୁହେଁ; ଏତେକରେ ନିରସ୍ତ ହେବ ନାହିଁ, ଯେ କୌଣସି ରୂପେ ତପସ୍ୟା ଭଙ୍ଗ କରିବାକୁ ହେବ, ବର୍ତ୍ତମାନ କି ଉପାୟ କରିବ, ( ଚିନ୍ତା କରି ) ହଁ, ପିଲାମାନେ ଖେଳନାକୁ ଭଲ ପାଆନ୍ତି, ଦୁଇ-ଜଣ ଖେଳନା ବିକେତା ପଠାଇବି, ଯଦି ସେଥିରେ ନ ଟଳେ ତେବେ ମାୟା ସୁନୀତିର ନିର୍ଯାତନ ଦେଖାଇବି, ସେଥିରେ ଆଉ ସମ୍ଭାଳି ହୋଇ ପାରିବା ସହଜ ନୁହେଁ, ଆଗ ସେହିଟା ପଠାଇବି କି ? ନା, ଯେଉଁ କାମଟା ଦାଆ ମୁନରେ ହୋଇଯିବ ସେଥିପାଇଁ କୁରାଢ଼ି ବାହାର କରିବା ଆବଶ୍ୟକ ନାହିଁ । ( ପ୍ରସ୍ଥାନ )

(ନାନାବିଧ ଖେଳପସରା ହସ୍ତରେ ଧରି ଦୁଇଜଣ ଲୋକର ପ୍ରବେଶ)

ଗୀତ ।

(ଆଡ଼ା) କିଏ ନେବ ଆସ ପିଲା ଭଲ ଖେଳନା । ପଦ ।

ନିର୍ମାଣ ନାନା ରତନେ ଆଣିଛୁ ଅତି ଯତନେ ।
ସରଗ ଜିନିସ ନୁହେଁ ଏହା ତୁଳନା । ୧ ।
ଦେଖ ମୋର ଏ ଅସରା ଅପୂର୍ବ ଶୋଭା ପସରା ।
କେତେ ନୂଆ ଦ୍ରବ୍ୟ ଅଛି ନାହିଁ କଳନା । ୨ ।
କିଏ ମୋର ବଙ୍କି ବୁଲେ ବାଣ୍ଟି ଦେବି ବିନାମୂଲେ ।
ନିଅ ନ ହେଲେ କହିବ ପଛେ ଭଳଣା । ୩ ।

(ଖେଳନା ସବୁ ଗୋଟି ଗୋଟି କରି ବାହାର କରି ଦେଖାଇବା; ତହିଁରେ ଧ୍ରୁବଙ୍କର ଧ୍ୟାନଭଙ୍ଗ ନ ହେବାରୁ ପ୍ରସ୍ଥାନ)

( ଜଣେ ଭୀଷଣାକୃତି ଅସିହସ୍ତ ଶବର, ଦ୍ୱାରା ଆକୃଷ୍ଟ ସୁନୀତି ଓ ମାଳତୀର ପ୍ରବେଶ )

ଶବର—ରଣ୍ଡି, ମୋ ସଙ୍ଗରେ ହେଙ୍ଗାମା କରୁଛି, ଆଉ ଇଧର ଆଉ,

ସୁନୀତି—ବନଚର 'ଭଦ୍ର ! ମୁଁ ଉତ୍ତାନପାଦ ରଜାଙ୍କର ରାଣୀ, ମୋର ନାମ ସୁନୀତି, ମୁଁ ପୁଅକୁ ଖୋଜିବାକୁ ଯାଉଛି, ମତେ ଦୟା କରି ଛାଡ଼ିଦିଅ ।

ଶବର—ତୁ ମୋ ମାଉସ ଖଳା ବାଟେ କାହିଁକି ଆଇଲୁ ? (ଧ୍ରୁବଙ୍କୁ ଦେଖାଇ) ଏଇ ଆମ ବଣର ନୂଆ ଠାକୁର, ଆଙ୍କ ଆଗରେ ତତେ ବଳି ଦେବି, ଛାଡ଼ ଦେବି, କହୁଛି ମୁଁ ରଜାଙ୍କର ରାଣୀ, ରାଣୀ କି ଜଙ୍ଗଲରେ ବୁଲନ୍ତି ?

ସୁନୀତି—(ଧ୍ରୁବଙ୍କୁ ଚାହିଁ) ରେ ବାପ ଧ୍ରୁବରେ ! ରେ ଧନ ଧ୍ରୁବରେ ! ମୁଁ ତତେ ଖୋଜି ଆସୁ ଆସୁ ଏ ମତେ ବାଟରେ ଧରି ମାରି ପକାଉଛି ରେ, ତୁ କାହିଁକି ତୁନି ହୋଇ ଦେଖୁଛୁ କଥା କହୁ ନାହୁଁ ରେ !

ଶବର—ରଣ୍ଡି ! ଧ୍ରୁବୁବୁକୁ ଡାକୁଚି, ଧ୍ରୁବୁବୁକୁ ତ ମୁଁ ସ୍ତୁବ କରନି; ତତେ ଆଜ ବଳି ଦେଇ ସାରେଁ ।

ମାଳତୀ—(ଶବରର ଗୋଡ଼ତଳେ ପଡ଼ି) ବାବୁ ! ମତେ ପଛରେ ବଳି ଦେ, ମଣିମାଙ୍କୁ ଛାଡ଼ି ଦେ ।

ଶବର—ଫେରଣ୍ଡା ମୁହିଁ ! ତୁ ତ ବେଶ୍ ମୋଟି ହେଇଚୁ, ଆମ ଚଉଁରିଆ ମାର କାମଦାମ କରିବୁ, ତତେ କାହିଁକି ମାରିବି, ଏଇ ହାଁକୁ ମାରି ରକ୍ତ ଖାଇବି ।

ମାଳତୀ—ବାବୁ ! ଆମେ ବଣା ହୋଇ ତୋ ଖଳାବାଟେ ଚାଲି-ଆସିଲୁ, ତୋର କିଛି ହାନି କରି ନାହୁଁ, ଆମକୁ ଛାଡ଼ି ଦେ ।

ଶବର—ହୁଁ, ବଣା ହୋଇ ଆସିଛ ଆଁଖି ଫୁଟି ଯାଇଥିଲା ।

ସୁନୀତି—(ବିକଳସ୍ୱରେ) ମୋ ବାପ ଧ୍ରୁବରେ ! ତୋ ପରି ପୁ
ଜନ୍ମ କରି ଏ ମ୍ଲେଚ୍ଛ ହାତରେ ଏତେ ସହି ହେଉଛି,
କେମନ୍ତ ଦେଖୁଛୁରେ. ଛି, ଛି, କି ନିଆଁ ତପ କରୁଛୁ
ଟିକିଏ ଆଖି ଫିଟେଇ ଗୁହୁଁ ନାହୁଁ ରେ । ତୁ ଛୁଡ଼ି ପଥ
କରିବୁ ବୋଲି ଜାଣିଥିଲେ କାହିଁକି ତତେ ଖୋଜି ଆ
ଥାଆନ୍ତିରେ ! (ରୋଦନ)

ଶବର—ରଣ୍ଡି ! ଶଙ୍କୁଚି, ଡାକ୍ ତୋ ଠାକୁରକୁ ଡାକ୍ ( ଅ
ଉତ୍ତୋଳନ )

ସୁନୀତି—ଆଲୋ ମାଳତୀ ଲୋ ! ( ମୂର୍ଚ୍ଛିତା ହୋଇ ଭୂତଳେ
ପଡ଼ିବା )

ମାଳତୀ—ଆଲୋ ମୋ ନଣିମା ଅଚେତା ହୋଇଗଲେ ଲୋ ମା
( ନିଜ କୋଳରେ ରଖିବା )

ନେପଥ୍ୟେ—(ଗରୁଡ଼ର ଗର୍ଜନ)

ଶବର, ସୁନୀତି ଓ ମାଳତୀ—(ଶୁଣି) ଅରେ ବାପ୍‌ରେ ? ( ଏହି
କହି ପଳାୟନ )

ନାରାୟଣ—(ପ୍ରବେଶ କରି) ଜୟ ଧ୍ରୁବ ! ଜୟ ଧ୍ରୁବ ! (ନ ଶୁଣି
ବାରୁ) ଓଃ ଏକାବେଳକେ ବାହ୍ୟଜ୍ଞାନ ଶୂନ୍ୟ । (ଧ୍ରୁବଙ୍କ
ମସ୍ତକରେ ଶଙ୍ଖସ୍ପର୍ଶ କରିବା

ଧ୍ରୁବ—(ଚମକି ପଡ଼ି ସ୍ୱଗତ) ମୁଁ ଜ୍ଞାନାଲୋକରେ ହୃଦୟ ମଧ୍ୟରେ
ଯେଉଁ ବିଶ୍ୱକର୍ତ୍ତାଙ୍କୁ ଦେଖୁଥିଲି, ସେ ମୋର ଅଗ୍ରେ
ଦଣ୍ଡାୟମାନ ଅଛନ୍ତି, ମୋର ଜନ୍ମ ସଫଳ ହେଲି
(ପ୍ରକାଶ୍ୟେ) ପ୍ରଭୋ ପ୍ରଣାମ, (ଉଠି ସ୍ତୁତି ଗାନ)

ଗୀତ ।

(ଜୟ) ପତିତ-ପାବନ ଜଗତ-ଜୀବନ
ଭକ୍ତଚିତ୍ତ-କୁଞ୍ଜବିହାର !
ସାର୍ଥ ହେଲା ଆଜ ଜନ୍ମ ଦେବରାଜ
ଚରଣ କମଳେ ଜୁହାରି । ପଦ ।

ଖୋଜିଲେ ମାଧବ ଏ ଦଶଦିଗେ,
ତବ ସମ ଦୟାମୟ ନ ଦିଶେ,
ଯେ ନ କର ଡେର, ଶୁଣେ ଶୂଦ୍ର ଡେର
(ହରି) ଦୂରରୁ ଅଧମ ଗୁହାରି । ୧ ।

ଲଭିବାକୁ କୃପା ସୁଧା ବରଷା,
କରିଅଛି ମନେ ବଡ଼ ଭରସା,
ଅବଶ୍ୟ ଶୁଣିବେ ପ୍ରାର୍ଥନା ଶ୍ରୀପଦେ
(ହରି) ବୃଥା ହୋଇ ନାହିଁ କାହାରି । ୨ ।

ଅସାର ନଶ୍ୱର ଏ ଲୋକ ଭବେ,
ନ ଲୋଡ଼ଇ ରାଜରାଜ-ବିଭବେ,
ରାମ କୃଷ୍ଣ ହରେ, ଉଚ୍ଚାରି ସ୍ନେହରେ
(ହରି) ଯାଉ ଏ ଜୀବନ ବାହାରି । ୩ ।

(ପ୍ରଣାମ କରିବା)

ନାରା—ବତ୍ସ ! ତୁମ୍ଭେ ମୋର ପରମ ଭକ୍ତ, କଠିନ ତପସ୍ୟାରେ ମୋତେ ସନ୍ତୁଷ୍ଟ କରିଛ, ବ୍ରହ୍ମାଦି ଦେବ ଦୁର୍ଲ୍ଲଭ ଧ୍ରୁବପଦ ତୁମ୍ଭଙ୍କୁ ପ୍ରଦାନ କଲି, ଛତିଶ ସହସ୍ର ବର୍ଷ ରାଜ୍ୟଭୋଗ ପରେ ଚିରକାଳ ସେହି ପଦରେ ବାସ କରିବ,
(ଅନ୍ତର୍ଦ୍ଧାନ)

ଧ୍ରୁବ—(ପ୍ରଣାମରୁ ଉଠି) କଅଣ, ମହାପ୍ରଭୁ ଗୁଲି ଗଲେଣି ! ହା ହା ମୁଁ ମୂଢ଼ କି କଲି ! ମହାମୁନି ନାରଦଙ୍କ କଥା ନ ମାନି ବାଲ୍ୟ ଗୃପଲ୍ୟରେ ତୁଚ୍ଛ ଉଚ୍ଚପଦ ପାଇଁ ତପସ୍ୟା କଲି, ସୁରମୁନିଗଣ କୋଟି କୋଟି ଯୁଗ ତପ କରି ଯାହାଙ୍କୁ ପାଉ ନାହାନ୍ତି, ଅନାୟାସରେ ତାଙ୍କର ଶ୍ରୀଚରଣ ଦର୍ଶନପାଇ ମୋକ୍ଷ ନ ମାଗି ସାମାନ୍ୟ କଥାରେ ସବୁ ଶ୍ରମପଣ୍ଡ କରିଦେଲି, ଆହା ! ମୁଁ କି ନିର୍ବୋଧ, ମାଟି ମାଠିଆର ଛିଦ୍ର ବୁଜିବା ପାଇଁ ଦକ୍ଷିଣାବର୍ତ୍ତି ଶଙ୍ଖ ପୋଡ଼ି ଚୂନ କଲି, ଆଉ ଏତେବେଳେ କଅଣ କରିବି ! ଚୋର ଗଲାପରେ ସାବଧାନ ହେଲା ପରି ଏ ଭାବନା ବୃଥା । (ପଟ୍ଟପ୍ରକ୍ଷେପ)

ନେପଥ୍ୟ—(ଗାନ)

ରାଗ ଭୈରବ—ଆଠତାଳ ।

ଆଉ କି କହିବି, ସବୁତ ମୋହର ଦୋଷ ହେ, ଆଶୁତୋଷ ! ।ପଦ।

ଶତକୋଟି ଜନ୍ମ କୃତ ସୁକୃତରୁ,
ପାଇଥିଲି ଗୁରୁ ବାଞ୍ଛା କଳ୍ପତରୁ
ଘୃତ ଜୀବ ଶ୍ରେୟ, ମାଗିଲି ମୁଁ ହେୟ,
ଆୟୁ ସୁତ ଯଶ କୋଷ, ହେ । ୧ ।
ରତନ ନିଧାନ ଦେଖି ନିକଟରେ,
ଗଲି କାଛି ବାଟ ଅନ୍ଧ କପଟରେ,
ଫେରି ଖୋଜି ତାରେ ନ ପାଇଲି ବାରେ
ବଧି କଲି ବୁଦ୍ଧି ମୋଷ, ହେ । ୨ ।
ନିର୍ମଳ ଶୀତଳ ସୁଧାସିନ୍ଧୁ କୂଳେ,
ଭ୍ରମିଲି ଅନେକ ପିପାସା ଆକୁଳେ,

ସେ ବାର ଅଜ୍ଞାନ ନ କଲି ମୁଁ ପାନ
ଏବେ କରେ କଣ୍ଠ ଶୋଷ, ହେ ! ୩ ।
ହରିବାକୁ ମୋର ଘୋର ଭବ ଶୋକ,
ଦେଇଥିଲେ ଏକ ବୀଣା ଦେବଲୋକ,
ଫିଙ୍ଗି ଦେଲି ଦୂରେ ସ୍ମୃତିପଥେ ପୁରେ
ଆଜ ତା ମଧୁର ଦୋଷ, ହେ ! ୪ ।
ଜଗତ-ଜନକ ଆପଣା କରମୁଁ;
ଭସ୍ମୁଙ୍କର ତମେ ହେଲି ପତିତ ମୁଁ,
ଅକୃତଜ୍ଞ ବୋଲି ନ ନେବକ ତୋଳି
ତନୟରେ ତେଜ ରୋଷ, ହେ ! ୫ ।

ଯବନିକାପତନ ।

---

## ପଞ୍ଚମ ଅଙ୍କ ।

---

ପ୍ରଥମ ଦୃଶ୍ୟ—ଅରଣ୍ୟ କୁଟୀର ବୃକ୍ଷମୂଳ ।

(ଖଣ୍ଡିଏ ମଞ୍ଚିଣାରେ ସୁନୀତି ଉପବିଷ୍ଟା, ପାର୍ଶ୍ୱରେ ମାଳତୀ

ସୁନୀତି—(ଦୀର୍ଘ ନିଃଶ୍ୱାସ ପକାଇ) ମାଳତି ! ଛ ମାସ ତ ଅନ୍ତ ପୂର୍ଣ୍ଣ ହେଲା, ପୁଅ କାହିଁ, ସେ କି ଅଛି, ମୁଁ ସତେ ଆଉ ତାକୁ ଦେଖିବି ? ଆହା ! ମୋ ଧ୍ରୁବରେ ! (ରୋଦନ)

ମାଳତୀ—ମଣିମା ! ତୁନି ହୁଅନ୍ତୁ, ଧୈର୍ଯ୍ୟ ଧରନ୍ତୁ, କାନ୍ଦି କାନ୍ଦି ତ ଆପଣ ସରିଗଲେଣି, ସେ ନିଶ୍ଚେ ଆସିବେ ।

ସୁନୀତ—ତୋହର କଥାରେ ତ ଏ ପୋଡ଼ା ପ୍ରାଣକୁ ଏତେ
କାଳଯାଏ ରଖିଲି, ଆଉ ରଖି ପାରିବି ନାହିଁ, ତୋତେ
କିଏ କହିଥିଲେ ଛ ମାସରେ ଆସିବ ?

ମାଳତୀ—ଆଜ୍ଞା, ମତେ କେହି କହି ନାହାନ୍ତି ।

ସୁନୀତ—ଆଉ ତୋ ମନକୁ ଭାବି ମତେ ବୋଧ ଦେଉଥୁ ?

ମାଳତୀ—ନା, ଯେଉଁଦିନ ମଣି ତପ କରିବାକୁ ଗଲେ, ସେ ଦିନ
ଆପଙ୍କ ବିକଳ ସହି ନ ପାରି ମୁଁ ଠାକୁରଙ୍କୁ ଡାକି ଡ଼ାକ
ଶୋଇପଡନ୍ତେ ଜଣେ ବ୍ରାହ୍ମଣ ସ୍ୱପନରେ ମତେ ଏ କଥ
କହିଥିଲେ ।

ସୁନୀତ—(କପାଳରେ ହାତଦେଇ) ଆରେ ! ଏ ସ୍ୱପନ କଥାକୁ
ସତ ବୁଝିଥୁ, ଆଉ କି ମୁଁ ତାର ଚନ୍ଦ୍ରମୁହଁ ଦେଖିବି
ଆଉ କି ସେ ଆସି ମା ମା ଡାକରେ ମୋର ପୋଡ
ପ୍ରାଣକୁ ଶୀତଳ କରିବ ? ହା ବିଧାତା; ତୋ ମନରେ
ଏତେ କଥା ଥିଲା, ଦୁଃଖିକି ଦୁଃଖ ଦବା କି ତୋର
ଅଭ୍ୟାସ ହୋଇଛି ? ମୋ ଧାଳରେ ! କାହିଁ ଗଲୁ
( ମୂର୍ଚ୍ଛା )

ମାଳତୀ—(ଆଉଁସି) ମଣିମା ! ଆଶ୍ୱସ୍ତା ହୁଅନ୍ତୁ ଆଶ୍ୱସ୍ତା ହୁଅନ୍ତୁ ।

ସୁନୀତ—(ସଚେତା ହୋଇ) ଧା ଦେବ ! ତୁ ଏଡ଼େ ନିଷ୍ଠୁର
ଏ ଅଭାଗିନୀର ଆଜୀବନ ଛଟପଟ କରି କି ଯଶ ଲଭିବୁ
ରେ କଠିନ ପ୍ରାଣ ! ତୁ ଧ୍ରୁବ ବିନା ରହିଛୁ କିପରି, ଯାଅ
ଶୀଘ୍ର ବାହାରି ଯାଅ ।

ମାଳତୀ—ମଣିମା ! ଆକୁଳ ହୁଅନ୍ତୁ ନାହିଁ, ଭଗବାନ ନିଶ୍ଚେ
ଦୁଃଖ ଫେଡ଼ିବେ ।

ସୁଜାତ — ଆଲୋ ବାଇଆଣି ! ଆଉ ମୁଁ ମୋର ଲହୁଣୀ ଧେଉଲାକୁ
କୋଳରେ ବସେଇ ମୁଖ ଚୁମ୍ବନ କରିବି ? ଆଉ ମୋ
ବାପ ଖେଳନା ପାଇଁ ଅଳି କରିବ ? ମଣିରେ ! ଏ ଦୁଃଖିନୀ
ମାମାକୁ ଛାଡ଼ି କାହିଁ ଗଲୁ ? ଓହୋ ହୋ ! ( ମୂର୍ଚ୍ଛା )

ମାଳତୀ—ମଣିମା ! ଆଶ୍ୱସ୍ତା ହୁଅ ଆଶ୍ୱସ୍ତା ହୁଅ ( ଚେତନା ନ
ହେବାରୁ ) ଓଃ ଏକାବେଳେ ଚେତା ବୁଡ଼ି ଯାଇଛି,
ଯାଉଛି ଟିକଏ ପାଣି ଆଣେ । (ପ୍ରସ୍ଥାନ)

ସୁଜାତ— (ସଚେତ ହୋଇ) ମାଳତି, ମାଳତି ! କେଉଁଆଡେ
ଗଲୁ ? ହଉ ଯା, ଆଉ ମୁଁ ଏ ଶୋକାକୁଳ ପ୍ରାଣ ରଖିବି
ନାହିଁ. ଏଠାରେ ମୋର ମଣିର ଚନ୍ଦ୍ରମୁହଁ ଦେଖି ପାରିବି
ନାହିଁ, ସେହିଠାରେ ଦେଖିବି, ଭାଗ୍ୟ ! ତୋର ଏତକି
ହିଁ, ଏତେ କଷ୍ଟ ଦେଇ ସୁଦ୍ଧା ତୋର ମନ ଶାନ୍ତ ହେଲା
ନାହିଁ, ଶେଷରେ ଅନ୍ଧୁଣୀର ହାତ ଗୋଡ଼ କାଟି
ପକେଇଲୁ; ହୃଦୟ ବଳମ୍ବ କାହିଁକି ? ଯାଅ ମୋ ବାପକୁ
ଦେଖିବୁ ଯା, ଉପାୟ କଅଣ ? (ଉଦ୍ବନ୍ଧନ ଧରି) ଏହି ତ
ଅଛି ଏବ, (ଠିଆ ହୋଇ ଏକ କାଳ ବୃକ୍ଷଶାଖା ବାନ୍ଧି,
ପ୍ରିୟତମ ! ମହାରାଜ ! ପତି ନାରୀର ଜପ ପତି ତପ,
ପତି ବ୍ରତ, ପତି ଆରାଧ୍ୟ ଦେବତା, ପତିହିଁ ସର୍ବସ୍ୱ । ଯେଉ
ପତିପ୍ରାଣା ରମଣୀମାନେ ସ୍ୱାମୀର ସେବାରେ କାଳ କାଟନ୍ତି,
ସେହିମାନେ କେବଳ ଜଗତରେ ଧନ୍ୟା, ସେହିମାନେ
ଏକା ପତି ସହିତ ସ୍ୱର୍ଗରେ ବାସ କରନ୍ତି । ପତି ଅସୁନ୍ଦର
ହେଉ, ରୋଗୀ ହେଉ, ମୂର୍ଖ ହେଉ, ବା ପ୍ରତିକୂଳ ସବୁ
ସମୟରେ ଗୁରୁ ତୁଲ୍ୟ ପୂଜନୀୟ ଅଟନ୍ତି, ଏହା ଋଷିଙ୍କ-
ଠାରୁ ଶୁଣିଲେ ମଧ୍ୟ ନିଜର ମନ୍ଦ ଭାଗ୍ୟରୁ ଦାସୀ ପାଷବନ୍ଧ

ହେଲି ପାଦପଦ୍ମ ସେବା ଦୂରେଥାଉ ଦର୍ଶନ ସୁଦ୍ଧା ପାଇଲି
ନାହିଁ, ଦାସୀ ଅଜ ଶ୍ରୀଚରଣରୁ ବିଦାୟ ହେଉଛି,
ଜନ୍ମାନ୍ତରରେ ଶ୍ରୀଚରଣ ଦର୍ଶନ ଦେବେ, ପରମେଶ୍ୱର !
ମହାରାଜଙ୍କର ମଙ୍ଗଳ କର, ଯଦି ଆପଣଙ୍କ କରୁଣାରୁ ମୋ
ମଣିଟି ପ୍ରାଣରେ ଥାଏ ତାକୁ ଦୀର୍ଘଜୀବୀ କର, ହରି !
ଆତ୍ମଘାତ ଦୋଷରେ ମୁଁ ଦୋଷୀ ନୁହେଁ, ତୁମ୍ଭେ ମାତାର
ହୃଦୟରେ ଯେଉଁ ସ୍ନେହ ପ୍ରବାହ ଦେଇଛ ଏ ଦୋଷ
ତାହାର, ମୋତେ ତୁମ୍ଭର ପଦପଦ୍ମ ନିକଟକୁ ନେଇଯାଅ,
(ଫାଶ ବେକରେ ଲଗାଇବାର ଉପକ୍ରମ)

ରାଜା—(ସହସା ପ୍ରବେଶ କରି ଦେବି ! ଏ କଅଣ କରୁଛ ! ଏ
କଅଣ କରୁଛ ? (ହସ୍ତଧରି) ପ୍ରିୟେ ଏ ସାହାସରେ
କାହିଁକି ପ୍ରବୃତ୍ତ ହେଲେ ?

ସୁନୀତି—କିଏ ?

ରାଜା—ପ୍ରିୟେ ! ମୁଁ ତୁମ୍ଭର ସ୍ୱର୍ଗୀୟ ଗୁଣ ହୀନ ଉତ୍ତାନପାଦ ।

ସୁନୀତି—ପ୍ରାଣେଶ୍ୱର ମହାରାଜ ! ଯାହା ହେଉ ଶେଷ କାଳରେ
ଦାସୀକି ଶ୍ରୀଚରଣ ଦର୍ଶନ ଦେଇ କୃତାର୍ଥ କଲେ, ଛାଡ଼
କଲବଲ କରନା, ମୁଁ ଏ ପୋଡ଼ା ପ୍ରାଣ ରଖିବି ନାହିଁ ।
ବିଦାୟ ଦିଅ, ଜନ୍ମାନ୍ତରରେ ଦାସୀକି ଭୁଲିବେ ନାହିଁ ।

ରାଜା—ଦେବି, ଏ କି କଥା କହୁଛ ? ଏ ଦୁଷ୍କର୍ମରେ କିଏ ତୁମ୍ଭଙ୍କୁ
ପ୍ରବର୍ତ୍ତେଇଦେଇଛି ?

ସୁନୀତି—ପ୍ରିୟତମ ! ମୋର ଏହି ଦଗଧ ହୃଦୟ,

ରାଜା—କାହିଁକି ?

ସୁନୀତି—ମହାରାଜ ? ଆଜକୁ ଛମାସ ହେଲା ମୋର ଅଖିର
ପିତୁଳା ଧ୍ରୁବ କେଉଁ ଅଢ଼େ ଗଲା ତାର କିଛି ବାର୍ତ୍ତା

ପାଇଲି ନାହିଁ, ତା ଲାଗି ମୋର ହୃଦୟ ଭିତରେ କଅଣ ହେଉଯାଉ, ଉଃ ଉଃ, କିଛି କହି ପାରିବି ନାହିଁ ଛାଡ଼ି ବିଦାୟ ଦିଅ, ମୁଁ ଜ୍ୱାଳା ଯନ୍ତ୍ରଣାରୁ ଉଦ୍ଧାର ପାଏଁ ।

ମାଳତୀ—(ଜଳଘଟ ହସ୍ତେ ପ୍ରବେଶ କରି) ଜୟ ମହାରାଜ, (ପାଣିରଖି) ଓଳଗି ।

ରାଜା—ଦେଖ ଲୋ ! ତୋ ମଣିମା କି ସାହସ କରୁଛନ୍ତି ।

ସୁନୀତି—ନାଥ ! ଆଉ କାହିଁକି ସନ୍ତପନ୍ତ କରୁଛନ୍ତି ? ଛାଡ଼ି ଦିଅନ୍ତୁ, ମୁଁ କେବେହେଁ ଏ ପ୍ରାଣ ରଖିବି ନାହିଁ, ଧ୍ରୁବ ବିନା ଏଥିରେ ମୋର କି ପ୍ରୟୋଜନ ?

ରାଜା—ଜୀବିତେଶ୍ୱରି ! ମୁଁ ଧ୍ରୁବର ବାର୍ତ୍ତା କହିବି, ଆଗ ମତେ କ୍ଷମା ଦିଅ, ଶବର ମୁକ୍ତାରେ ପଡ଼ି ବଦଳି ମନେ କଲି ଘର ମୁଁ ମୂଢ଼ ତୁମ୍ଭପରି ପୁଣ୍ୟବତୀ ଗୁଣବତୀ ସତୀଙ୍କୁ, ନିର୍ବାସନ ଦଣ୍ଡ ଦେଇ ଗୁରୁତର ଅପରାଧ କରିଛି । ମାର୍ଜନା କର ।

ମାଳତୀ—(ସ୍ୱଗତ) ଆଜି କି ଭାଗ୍ୟ ? ଯେଉଁ ଲୋକ ପାଞ୍ଚବର୍ଷ ହେଲା ମୁହିଁ ଚାହିଁ ନ ଥିଲା, ସେ ଆସି କ୍ଷମା ମାଗୁଛି, ବୋଧ ହୁଏ ଏତେଦିନ ପରେ ମଣିମାଙ୍କ ଦଶା ଫେରିଲା ।

ସୁନୀତି—ଆର୍ଯ୍ୟପୁତ୍ର ! ଚିର ପଦଦାସୀଠାରେ ସ୍ୱାମୀର କ୍ଷମା ପ୍ରାର୍ଥନା ଉଚିତ ନୁହେଁ, ଯାହା ହୋଇଛି ତହିଁରେ ଆପଣଙ୍କର କିଛି ଦୋଷ ନାହିଁ, ସବୁ ଏ ଅଭାଗିନୀର ମନ୍ଦ କପାଳର ଫଳ, ମୋର ମଣି କେଉଁଠି ଅଛି କହନ୍ତୁ । ଆହା ମୋ ଧ୍ରୁବରେ ! (ରୋଦନ)

ରାଜା—ଦେବି ! ତୁମ୍ଭର ରୋଦନ ମୋର ନିର୍ଦ୍ଦୟ ହୃଦୟରେ କଠା ଘାଆରେ ଚୂନ ପରି ବିଶେଷ ପୀଡ଼ା ଦେଉଛି, ଆଉ ବିଳାପ କର ନାହିଁ, କୁଳଚନ୍ଦ୍ର ଆଜି ଆସିବ ।

ମାଳତୀ—ଶ୍ରୀଯୁକ୍ତ କ ସ୍ୱପନ ଦେଖିଛନ୍ତି ?

ରାଜା—ନା ଲୋ ! ପୁଅ ତପ କରିବାକୁ ଗଲାଦିନ ମୁଁ ତାକୁ ଖୋଜିବାକୁ ଯାଇଁ ଯାଇଁ ଉପବନରେ ନାରଦଙ୍କଠାରୁ ଶୁଣିଲି, ସେ ଭଗବାନଙ୍କର ଦର୍ଶନ ଆଉ ଧ୍ରୁବ-ପଦ ପାଇ ଆଜ ଫେରି ଆସିବ, ମୁଁ ସେହି ଦିନରୁ ତା'ର ଅପେକ୍ଷାରେ ଏହି ଉପବନରେ ଥିଲି, ଆଜ ଦେବୀଙ୍କୁ କ୍ଷମା ମାଗିବାକୁ ଆସି ଏ ଘଟନା ଦେଖିଲି, "ଈଶ୍ୱର ଯାହା କରନ୍ତି ତାହା ମଙ୍ଗଳ ପାଇଁ" ଏହା ଧ୍ରୁବ ସତ୍ୟ, ମୁଂ ଏଠାକୁ ଆସି ନ ଥିଲେ ଆଜ ମୋର ଏହି ଅମୂଲ୍ୟ ରତ୍ନରୂପିଣୀ ପ୍ରିୟତମାଙ୍କୁ ହରେଇ ଥାଆନ୍ତି, ତୁ ଯାଇଁ ଦେବୀ ସୁରୁଚି ଆଉ ଉତ୍ତମକୁ ଡ଼ାକି ଆଣ, ସେ ଆସି କୁଳମଣି ଧ୍ରୁବର ତପଃପୂତମୂର୍ତ୍ତି ଦେଖି ନୟନ ପବିତ୍ର କରନ୍ତୁ ।

ମାଳତୀ—(ସ୍ୱଗତ) ଯେଉଁ ଡାକୁଣୀ ପୁଅକୁ ବାପର କୋଳରେ ବସେଇ ଦେଲା ନାହିଁ, ସେ ଆଜ ଏଡ଼େ କ୍ଷୀର ସନ୍ଦେଶ ପାଇବ, ମୋରତ ମନକୁ ଯାଉ ନାହିଁ, ( ପ୍ରକାଶ୍ୟେ ) ଯେ ଆଜ୍ଞା (ପ୍ରସ୍ଥାନ) ।

ନେପଥ୍ୟେ—ମହାଦେଇ ! ଏହିବାଟେ ବିଜେ କରନ୍ତୁ ।

ମାଳତୀ—(ସହସା ପ୍ରବେଶ କରି) ଆଜ୍ଞା ଛୋଟ ମଣିମା ଯୁବରାଜଙ୍କ ସହିତ ବିଜେ କରୁଛନ୍ତି ।

ରାଜା—(ସ୍ୱଗତ) ମହାତ୍ମାମାନେ ଯେ କହିଛନ୍ତି, "ଅନୁକୂଳେ ଜଗନ୍ନାଥେ ଅନୁକୂଳଂ ଜଗତ୍ରୟଂ" ଏହା ଅକ୍ଷରେ ଅକ୍ଷରେ ସତ୍ୟ, ଯେ ସୁନୀତିର ନାମ ଧରୁ ନଥିଲା, ସେ ନିଜେ ଅନାହୂତ ହୋଇ ତାରି କୁଡ଼ିଆକୁ ଆସୁଛି ।

(ଉତ୍ତମ ଓ କଞ୍ଚୁକୀ ସହିତ ସୁରୁଚିର ପ୍ରବେଶ)

ସୁରୁଚି—ମହାରାଜ ! ମହାଦେଇ ! ତୁମ୍ଭେମାନେ କେବଳ ମୋ ମଣିକି ଦେଖି ପ୍ରସନ୍ନ ହେବ, ମୁଁ ହେବି ନାହିଁ, ମତେ ଟିକିଏ ସମ୍ବାଦ ଦେଇନାହିଁ, ମୁଁ ନାରଦଙ୍କଠାରୁ ଶୁଣି ଧାଇଁ ଆସିଲି କାହିଁ ମୋ ମଣି କାହିଁ ?

ସୁନୀତି—ତୁମ୍ଭଙ୍କୁ ଡାକିବାକୁ ମାଳତୀ ଯାଉଥିଲା । ପୁଅ ଅବଧି ଆସି ନାହିଁ ।

ରାଜା—ଚାଲ ମଣିକି ଉପବନରୁ ବୋଲେଇ ଆଣିବା ।

ନେପଥ୍ୟେ—ଜୟ ଜଗଦୀଶ୍ୱର, ଜୟ ଜଗଦୀଶ୍ୱର, ମାମା ମାମା ।

(ଧ୍ରୁବର ପ୍ରବେଶ)

ସୁନୀତି—ହେଇ ମୋ ଅମୂଲ୍ୟନିଧି ଆସିଲାଣି, ଆସ ବାପ ! ଆହୁରି ଡାକ, ଅନେକ ଦିନରୁ ଦୁଃଖିନୀ ଏ ମଧୁର ଡାକ ଶୁଣି ନାହିଁ, ବାପରେ ! ମୁଁ ତୋର ଚାନ୍ଦ ମୁହଁ ନ ଦେଖି ବାଘୁଣୀ ହୋଇ ଯାଇଥିଲି, ଦୁଃଖିନୀ ମାଆକୁ ଶୋକ-ସାଗରରେ ଭସାଇ କେଉଁଠିକି ଯାଇଥିଲୁ ଧନ, ମୁଁ ତ କ୍ଷଣେ ପାଖରୁ ଅନ୍ତର ହେଲେ ମାମା ଡାକରେ ଅସ୍ଥିର ହୋଇପଡ଼ୁ, ଏତେ କାଳ ଏକାକୀ କିପରି ରହିଲୁ ବାପ ! ସିଂହ ବାଘ ଦେଖି ଡରୁ ନ ଥିଲୁ, ଆଳ ! ଆଜ ମୁଁ ତୋ ଲାଗି ପ୍ରାଣ ହରାଉଥିଲି, ତୋର ପିତା ଆସି ରକ୍ଷା କଲେ ।

ଧ୍ରୁବ—(ସୁନୀତିଙ୍କୁ ନମସ୍କାର କରି) ବାବା କାହାନ୍ତି ?

ସୁନୀତି—ହେଇ ବାପ ! ବାବା, ସାନ ମାମା, ନନା, ସମସ୍ତେ ତତେ ଦେଖିବାପାଇଁ ଚାହିଁ ରହିଛନ୍ତି ।

ଧ୍ରୁବ—(ନିକଟକୁ ଯାଇଁ ସମସ୍ତଙ୍କୁ ନମସ୍କାର କରିବା)

ରାଜା—(ରାଜା କୋଳକୁ ନେଇ ମସ୍ତକ ଚୁମ୍ବନ କରି) ବତ୍ସ ! ଆଜ ମୋର ଜନ୍ମ ସଫଳ ହେଲା, ଆଜ ମୋର ସୂର୍ଯ୍ୟବଂଶ ପବିତ୍ର ହେଲା ।

ସୁରୁଚି—(କୋଳକୁ ନେଇ) ବାଳ ! ତୁ ଆମର ବଂଶ ରକ୍ଷାକଲୁ, ମୁଁ ଅଜ୍ଞାନରେ ତତେ ଯେଉଁ ଗାଳି ଦେଇଥିଲି ମନେ ରଖିବୁ ନାହିଁ ।

ଧ୍ରୁବ—ସାନ ମାମା ! ମୁଁ ଆପଣଙ୍କ ଉପଦେଶରେ ଦେବଦୁର୍ଲ୍ଲଭ ଭଗବାନଙ୍କର ପାଦପଦ୍ମ ଦର୍ଶନ କରି ଚିରକାଳ ଆପଣଙ୍କ ଚରଣରେ ଋଣୀ ରହିଲି ।

ସୁନୀତି—(କୋଳ କରି) ଧନ ! ମୋ ମଣି ! ଆଜ ଏ ଅନ୍ଧୁଣୀର ଆଖି ଫିଟିଲା ।

ଉତ୍ତମ—(ଧ୍ରୁବଙ୍କ ହାତ ଧରି) ଭାଇ ! ଆସ ପେଣ୍ଡୁ ଖେଳିବା ।

ଧ୍ରୁବ—ହଉ ଚାଲ । (କୋଳାକୋଳି ହେବା) ।

ରାଜା—ବତ୍ସ ! ମନ୍ତ୍ରୀଙ୍କୁ କହ ସେ ଉତ୍ସବର ଆୟୋଜନ କରିବେ । ଦେଖ ! ଯେଉଁ ଦୟାଳୁ ପରମପିତା ପରମେଶ୍ୱର ଆଜ ଆମ୍ଭଙ୍କୁ ଏହି ପରମ ଭାଗ୍ୟ ଦେଇଛନ୍ତି, ଚାଲ ତାଙ୍କର ଭୁବନପାବନ ନାମ କୀର୍ତ୍ତନ କରି ନଗରକୁ ପବିତ୍ର କରିବା ।

(ସମସ୍ତଙ୍କର ପ୍ରସ୍ଥାନ) ।

(ପଟପରିବର୍ତ୍ତନ)

## ଦ୍ୱିତୀୟ ଦୃଶ୍ୟ ।

### ଗ୍ରାମପଥ ।

(ଦୁଇଦିଗରୁ ଦୁଇଜଣ ଗ୍ରାମ୍ୟଲୋକର ପ୍ରବେଶ)

ଜଣେ—ଜଗୁଭାଇ ! ଦଣ୍ଡବତ, ଦଣ୍ଡବତ, ସବୁ ଅଛ ତ ?

ଜଗୁ—କରେ କରେ, ଭଗୁ ! ଦଣ୍ଡବତ, ହଁ ସବୁ ଅଛି, ତୋର ତ ସବୁ ଭଲ ?

ଭଗୁ—ଭାଇ ! ମୁଁ ତ କୁମ୍ଭାର ଚକରେ ମାଟି ପେଣ୍ଡୁଳା ପରି ସଂସାରରେ ଘୁରୁଛି, ସେଥିରେ ଭଲ କଅଣ ପଚାରୁଛ ? ତେବେ ତୁମ କଲ୍ୟାଣରୁ ଏକରକମ ଅଛି ।

ଜଗୁ—ସଂସାରରେ ସମସ୍ତେ ଘୁରୁଛନ୍ତି ନା ତୁ ଏକା ?

ଭଗୁ—ସମସ୍ତେ ।

ଜଗୁ—ତେବେ ତୋର ବୈରାଗ୍ୟ କେତେଦିନ ହେଲା ?

ଭଗୁ—ଅନେକ ଦିନରୁ ।

ଜଗୁ—କାହିଁକି ?

ଭଗୁ—ଭାଇ ! ବିନା କାରଣରେ କିଏ ବୈରାଗୀ ହୁଏ ? ଗରିବ, ଅଳସୁଆ, ରୋଗୀ, ନିଶାଖୋର ବା ରଣ୍ଡିଆ ହେଲେ ଲୋକେ ବୈରାଗୀ ହୁଅନ୍ତି, ତୁମ୍ଭେ କଅଣ ଏକଥା ଜାଣ ନାହିଁ ?

ଜଗୁ—ଆରେ ! ଏ ସବୁ ବୈରାଗ୍ୟର କାରଣ ?

ଭଗୁ—ଆଉ କଅଣ ?

ଜଗୁ—ନା, ନା, ତତ୍ତ୍ୱଜ୍ଞାନ ।

ଭଗୁ—ହା, ହା, ହା, ଭାଇ ! ସେଭଳିଆ ବୈରାଗୀ ଏ ଯୁଗରେ ଅଛନ୍ତି ? ଖୋଜିଲେ କୋଟିଏ ଭିତରେ ଗୋଟିଏ ମିଳିବ କି ନାହିଁ ସନ୍ଦେହ, ସବୁ ନକଲ, ସବୁ ନକଲ ।

ଜଗୁ—ତା ଠିକ୍, ତେବେ ତୋର ବୈରାଗୀ ହେବାର କାରଣ ?

ଭାଗୁ—ଏ ଯୁଗରେତ କନ୍ୟାପଣ ହେଲା ବେଶି, ତହିଁରେ ପୁଣି ଯେବେ ଦୁଇତିନିଟା ବର ଜୁଟିଲେ ତେବେତ ହେଲା ନିଲାମ ଡାକ ।

ଜଗୁ—ହଁ ହଁ ସେଦିନ ଆମ ଗାଁ ପାଣୁପଣ୍ଡା ଝିଅକୁ ବାହା ହବା ପାଇଁ ଦୁଇଶଟଙ୍କା ଦେଇ ବରଣ ଦାଇ ଗୋଟିଏ ବର ଆଣିଥିଲା, ତାର ପରେ ବିଷ୍ଣୁନପୁରରୁ କୃଷ୍ଣନ ଦାସ ଆସି କହିଲା, ମୁଁ ତିନିଶଟଙ୍କା ଦେବି ମତେ ବାହା କରିଦିଅ ।

ଭାଗୁ—ତାରପରେ କଅଣ ହେଲା ?

ଜଗୁ—ଟଙ୍କା କି ଛାଡ଼ିବାର ଜିନିଷ ? କୃଷ୍ଣନିଆ ବାହା ହୋଇ ଚାଲିଗଲା ।

ଭାଗୁ—ଯେ ଆଗରୁ ଟଙ୍କା ଦେଇଥିଲା, ସେ କଅଣ କଲା ?

ଜଗୁ—ସେ ଗ୍ରାମର ଭଲଲୋକଙ୍କ ଆଗରେ ଗୁହାରି କରି କଷ୍ଟେ ସୃଷ୍ଟେ ଟଙ୍କାଗୁଡ଼ିକ ପାଇଲା, କାନମୁଣ୍ଡ ଅଉଁସି ଶିଶୁପାଳ ପରି ଫେରିଗଲା ।

ଭାଗୁ—ତେବେତ ତୁମେ ସବୁ ଜାଣିଛ ।

ଜଗୁ—ତୋର ଏ କଥାରେ ଭାବନା କାହିଁକି ?

ଭାଗୁ—ଭାଇ ! ମୁଁ ଯେ ଏହିଭଳିଆ କାର୍ଯ୍ୟରେ ପଡ଼ି ସର୍ବସ୍ୱ ହରେଇଛି ।

ଜଗୁ—କିପରି ?

ଭାଗୁ—ମୋର ପ୍ରଥମ ବାହାରେ ବାସନକୁସନ ପର୍ଯ୍ୟନ୍ତ ବିକା ଯାଇଥିଲା, କେବଳ ପାଞ୍ଚମାଣ ଗୁଷ ଜମି ଥିଲା ।

ଜଗୁ—ତାପର ।

ଭାଗୁ—ତିନିଟା ପୁଅ ପରେ ସେ ସ୍ତ୍ରୀ ମରିଗଲା ।

ଜଗୁ—ସେତ ଅନେକଦିନର କଥା ତାର ପରେ କଣ ହେଲା ।

ଭଗୁ—ଅଢ଼େଇମାଣ ଜମି ବନ୍ଧକ ସାଢ଼େ ତିନିଶଟଙ୍କା କଲି, ତା ପରେ କନ୍ୟା ଠିକ୍ କରି ବାହା ହବାକୁ ଗଲି,ଭାଇରେ ! ହାତଗଣ୍ଠି ପଡ଼ିବାକୁ କାଣ୍ଡିଏ କି ବାକିଥିବ ମନ୍ଦ ଅଛି, ଜଣେତ ଆସ ଦୋହରି ହାଙ୍କି ଦେଲା ।

ଜଗୁ—ତୁ କଣ ଫେରି ଆସିଲୁ ?

ଭଗୁ—ନା, ମୁଁ ତ ଭାରି ଜିଦ୍‌ଖୋର, ମନେ କଲି, ଏତେ ବାଟ ଯାଏ ବାହା ହୋଇ ଫେରି ଗଲେତ ଲୋକେ ହସିବେ, ସଙ୍ଗେ ସଙ୍ଗେ ବାକି ଜମି ସେତକ ବନ୍ଧକ ଟଙ୍କା ଦେଲି, ଆଉ ଗୁଡ଼ିବ କଅଣ ? ସେହି ଦିନୁତ ବାଟର ଭିକାରି ହେଇଛି ।

ଜଗୁ—ପଛ ସ୍ତ୍ରୀର ପିଲା ଝିଲା ହେଲେଣି ?

ଭଗୁ—ହଁ, ଆଠଟା କାଠଫଳ ।

ଜଗୁ—କାଠଫଳ କଅଣ ?

ଭଗୁ—ଭାଇ ! ମୁଁ ନିତ ଠାକୁରଙ୍କୁ ଡ଼ାକୁଥିଲି, ଯେବେ ଦିଅଟି ବୋଲିଟିଏ ଝିଅ ହୋଇଯିବ ତେବେ ମୁଁ ଯେଉଁ ଜମିକି ସେହି ଜମି କରି ନେବ, କିନ୍ତୁ ମୋ ମନ୍ଦ କପାଳକୁ ଆଠଟା ଯାକ ପୁଅ ହେଲେ ।

ଜଗୁ—ଆରେ ବାଃ ଯେଉଁ କନ୍ୟା ବିକ୍ରୟ କଲେ ସାତପୁରୁଷ ନରକରେ ପଡ଼ନ୍ତି ତାକୁ ତୁ ଭଲ ମନେ କରୁଛୁ ଆଉ ଯେଉଁ ପୁଅ ପାଇବା ଲାଗି ଲୋକେ ବାରବ୍ରତ କରି ସଢ଼ି ଯାଉଛନ୍ତି, ସେ ପୁଅକୁ ତୁ କାଠଫଳ କହୁଛୁ ।

ଭଗୁ—ଆଜି କାଲିତ ସେଗୁଡ଼ା ଖାଇବାକୁ ପାଉନାହାନ୍ତି ଯେବେ ମାଗି ମୁଡ଼ି ଖାଇ ବଞ୍ଚି ଯାଆନ୍ତି ତେବେ ପର ଘରେ ମୂଲ

ଲାଗୁ ଲାଗୁ ତାଙ୍କର କାଳ କଟିବ, ଅଉତ ସମ୍ପତ୍ତି ନାହିଁ ଯେ ଭଳ ବାହା ହେବେ କିବା ବାପ ମାଆଙ୍କୁ ମୁଠାଏ ପିଣ୍ଡ କି ଚଳାଏ ପାଣି ଦେଇ ପାରିବେ, ଏଥିରେ ତାଙ୍କୁ କାଠଫଳ ନ କହି କଅଣ କହିବ ?

ନଗୁ—ତା ସତ୍ୟ; କନ୍ୟା ବିକ୍ରୟ ପ୍ରଥା ଉଠି ନ ଗଲେ ରକ୍ଷା ନାହିଁ, ଲୋକେ ଅର୍ଥ ଲୋଭରେ ନଅ ଦଶ ବର୍ଷର ବାଳିକାକୁ ଷାଠିଏ ସତୁରି ବର୍ଷ ବୁଢ଼ାର ହାତରେ ଦେଇ ବାଳିକାର ସର୍ବନାଶ ଆଉ ଦେଶର ନାନାବିଧ ଅମଙ୍ଗଳ ଘଟାଉ-ଛନ୍ତି ।

ଭଗୁ—ଭାଇ ! ରଜା ଯେପରି ଦୟାଳୁ ଶୁଣୁଛି ଏକଥା ତାଙ୍କ କାନରେ ପଡ଼ିବା ମାତ୍ର ସେ ଉଠେଇ ଦିଅନ୍ତେ, ତୁମ ଧୋବ ଧାଉଳିଆଙ୍କର କିଛି ପଡ଼ୁନାହିଁ ବୋଲି ତ ତୁମେମାନେ ତୁନି ହୋଇ ରହିଲ; ଆଉ କହୁଛି କିଏ ? ଆମେ ମଲା ମୁଣ୍ଡିଆ ମରୁ ଛୁ ।

ଜଗୁ—ଆଜି ରଜାଙ୍କ ମନ ଭାରି ଖୁସି ଅଛି, ଚାଲ ସମସ୍ତେ ମିଶି ଏକଥା ତାଙ୍କ ଛାମୁରେ ଜଣେଇବା ।

ଭଗୁ—ଭାଇ ! ଆଜି ରଜାଙ୍କର କଅଣ ହେଇଛି କି ! ଦେଶଟା ଯାକତ ଆନନ୍ଦରେ ମାତି ଉଠିଛି ।

ଜଗୁ—ଆନନ୍ଦର କଥା କଅଣ ଦେଖିଲୁ କି ?

ଭଗୁ—ଦେବତାମାନଙ୍କର ପୂଜା ହେଉଛି, ଶଙ୍ଖ ହୁଳ ହୁଳି ଆଉ ନାନା ପ୍ରକାର ବାଦ୍ୟରେ ଆକାଶ ଉଛୁଳି ପଡ଼ୁଛି, କେଉଁଠି ବ୍ରାହ୍ମଣଙ୍କୁ କେଉଁଠି ଗରିବଙ୍କୁ ଅନ୍ନବସ୍ତ୍ର ଦାନ କରା ହେଉଛି, ସମସ୍ତେ ହରି ସଙ୍କୀର୍ତ୍ତନ କରୁଛନ୍ତି,

ଯାହାକୁ ପଚାରିଲି ଏପରି କାହିଁକି ? ସେ କେବଳ କହିଲା ହରିବୋଲ ହରିବୋଲ ।

ଜଗୁ—ତୁ କଅଣ ଶୁଣି ନାହୁଁ ରଜାଙ୍କ ପୁଅ ଧ୍ରୁବ ତପ କରି ଭଗବାନଙ୍କଠାରୁ ବର ପାଇ ଆଜି ଫେରି ଆସିଛନ୍ତି, ଏଇଥି ପାଇଁ ଏ ସବୁ ଉତ୍ସବ ହେଉଛି, ଆହୁରି ସ୍ୱର୍ଗରୁ ଅପ୍ସରାମାନେ ଆସିଛନ୍ତି, ରାଜସଭାରେ କୀର୍ତ୍ତନ କରିବେ, ମୋ ସଙ୍ଗରେ ଆ, ଦେଖିବୁ, ମନ ଇଚ୍ଛା ଧନ ପାଇବୁ, ଆଉ ସେ କଥାଟା ମଧ୍ୟ ଜଣେଇବା ।

ଜଗୁ—ହଉ, ଚାଲ, (ଉଭୟର ପ୍ରସ୍ଥାନ) ।

---

## ତୃତୀୟ ଦୃଶ୍ୟ ।

### ରାଜସଭା ।

( ରାଜା, ରାଣୀଦ୍ୱୟ, ପୁତ୍ରଦ୍ୱୟ, ମନ୍ତ୍ରୀ, ବିଦୂଷକ ଓ ଛତ୍ରଚାମର ଧାରୀ )

ରାଜା—ମନ୍ତ୍ରୀ ଉତ୍ସବର ସମୁଚିତ ଆୟୋଜନ ହୋଇଛି ତ ?

ମନ୍ତ୍ରୀ—ଆଜ୍ଞା ଶ୍ରୀଛାମୁଙ୍କ ଆଦେଶାନୁସାରେ ସମସ୍ତ କରିଛି ।

ରାଜା—କଅଣ କରା ଯାଇଛି ?

ମନ୍ତ୍ରୀ—ସ୍ଥାନେ ସ୍ଥାନେ ଔଷଧାଳୟ, ବିଦ୍ୟାଳୟ, ଅନାଥାଶ୍ରମ ସ୍ଥାପିତ ହୋଇଛି, ନିର୍ଜଳ ପ୍ରଦେଶରେ କୂପ, ପୁଷ୍କରିଣୀ ଖୋଳିବାର ସ୍ଥିର ହୋଇଛି; ବ୍ରାହ୍ମଣଙ୍କୁ ଏବଂ ଗରିବ-ମାନଙ୍କୁ ଅନବସ୍ତ୍ର ବିତରଣ କରା ଯାଉଛି; ଦେବତାମାନଙ୍କର ପୂଜା, ହୋମ, ହରିନାମକୀର୍ତ୍ତନ ଯଥାବିଧି ହେଉଛି; ସଭାରେ କୀର୍ତ୍ତନ କରିବା ପାଇଁ ଅପ୍ସରାମାନେ ଆସିଛନ୍ତି ।

ରଜା—ତୁମ୍ଭେ ମୋର ଇଚ୍ଛାନୁରୂପ କାର୍ଯ୍ୟ କରିଥିବାରୁ ତୁମ୍ଭଙ୍କୁ ଧନ୍ୟବାଦ ନ ଦେଇ ରହିପାରୁ ନାହିଁ ।

ବିଦୂ—ମହାରାଜ ! ଆଜ ଦ୍ରବ୍ୟ ଖାଦ୍ୟ ଯେତେ ସ୍ତୂପ ପଡ଼ିଛି ସତ୍ୟ, କିନ୍ତୁ ବାଳକମାନଙ୍କର ପାଚିଲା ପିଆସ ଖାଇବା ଦେଖି ପିଞ୍ଜରା ଭିତରେ ଶୁଆ କଲବଲ ହେଲାପରି ଏ ବ୍ରାହ୍ମଣଟା କେବଳ ଛଟପଟ ହେଉଛି ।

ରଜା—( ସମ୍ଭ୍ରମରେ) ବୟସ୍ୟ ! କାହିଁକି ?

ବିଦୂ—ମହାରାଜ ! ତାଙ୍କ ଦେଖି ଆହ୍ବାର ଧର୍ମ ପଗ୍ଭରୁଛନ୍ତି ।

ରଜା—ତୁମ୍ଭ ଏ କଥାର ଅର୍ଥ ମୁଁ ବୁଝିପାରୁ ନାହିଁ ।

ବିଦୂ—ମହାରାଜ ! ପେଟତ ଦେଖୁଛନ୍ତି ଆଉ ଖାଇବ କଅଣ ?

ରଜା—ବୟସ୍ୟ ! ତୁମ୍ଭର କି ଜଳୋଦର ରୋଗ ହୋଇଛି ?

ବିଦୂ—ନା ମହାରାଜ ! ଅଭିବ ସ୍ଥାନରେ କି କୌଣସି ରୋଗ ପ୍ରବେଶ କରିପାରେ ?

ରଜା—ତେବେ ତୁମ୍ଭର ପେଟଟି ଏତେବଡ ହୋଇଛି କାହିଁକି ?

ବିଦୂ—ମହାରାଜ ! ସବୁଦିନତ ସେ ଟିକିଏ ବଡ ଥିଲା, ଆଜ ଆନନ୍ଦରେ ଆକଣ୍ଠପୂର୍ଣ୍ଣ ହୋଇ ଏଭଳି ଫୁଲି ଯାଇଛି, ପୁଣିତ ଅପ୍ସରାମାନେ ଆସୁଛନ୍ତି କାନରେ ଅମୃତ ଧାର ଢାଳିବେ, କରିବ କଅଣ ? (ପେଟରେ ହାତ ବୁଲେଇ) "ଅଦ୍ୟାପି ଭକ୍ଷିତୋ ଯେନ ବାତାପିଶ୍ଚ ମହାସୁରଃ, ସମୁଦ୍ରଃ ଶୋଷିତୋ ଯେନ ସୋଽଗସ୍ତ୍ୟୋ ବଡ଼ବାନଳଃ ।" ( ପେଟରେ ତାଳି ମାରିବା )

ମନ୍ତ୍ରୀ—ମହାଶୟ, ଏପରି କରିବାର ଉଦ୍ଦେଶ୍ୟ ?

ବିଦୂ—ଆହେ ! ଏ ମନ୍ତ୍ର ପଢ଼ି ପେଟରେ ହାତ ବୁଲାଇଲେ ଭୁକ୍ତ ଦ୍ରବ୍ୟ ଜୀର୍ଣ୍ଣ ହୋଇଯାଏ ।

ମନ୍ତ୍ରୀ— (ହସିବା)

ବିଦୂ—ଆଜିକାଲିତ ମନ୍ତ୍ରଯନ୍ତ୍ରରେ କାହାର ବିଶ୍ୱାସ ନାହିଁ, ତୁମ୍ଭେ ହସିବ ନାହିଁ କାହିଁକି ?

ମନ୍ତ୍ରୀ—ମହାଶୟ ! ମୁଁ ମନ୍ତ୍ରକୁ ଉପହାସ କରୁ ନାହିଁ ।

ବିଦୂ—ଆଉ—

ମନ୍ତ୍ରୀ— ତୁମ୍ଭର ଆଶାକୁ ।

ବିଦୂ—ଏହା ତୁମ୍ଭର ବୁଝିବା ଭୁଲ, ଆଶା ଅସୀମ, ତାକୁ କୀଟରୁ ବ୍ରହ୍ମାଙ୍କ ପର୍ଯ୍ୟନ୍ତ କେହି ଛାଡ଼ି ନାହାନ୍ତି, ଆମ୍ଭ ବ୍ରାହ୍ମଣଙ୍କଠାରୁ ତୁମ୍ଭଠାରେ ତାର ମାତ୍ରା ବେଶି ।

ମନ୍ତ୍ରୀ—କପର ?

ବିଦୂ—ଆମ୍ଭେମାନେ ଯାହାତାହିଁ କିଛି ଖାଇବାକୁ ପାଇଲେ ସନ୍ତୁଷ୍ଟ, କିନ୍ତୁ ତୁମ୍ଭେମାନେ ପରୋକ୍ଷରେ ଅଳଆ ଅଳଆ ନେଇ ସୁଦ୍ଧା ଯେ ଅସନ୍ତୁଷ୍ଟ ଥାଅ ।

ମନ୍ତ୍ରୀ—(ଲଜ୍ଜିତ ହୋଇ ଅଧୋମୁଖ ହେବା ) ।



( ଅପ୍ସରାମାନଙ୍କର ପ୍ରବେଶ ଓ ଗାନ )

ଡ଼ାକରେ ହୃଦୟ ଦୟାମୟ, ଦୟାମୟ, ଦୟାମୟ ।
ସୃଷ୍ଟିସ୍ଥିତିଲୟ-କାରଣମୟ ହୃତଭକ୍ତଭୟ ରମାନିଳୟ । ପଦ ।
ଯାର ନାମେ ତୁଟେ ନିବିଡ଼ ଭବପାଶ ।
ପ୍ରଣାମେ ନିଏ ଦାସେ ଯେ ନିଜ ପାଶ ।
ବେଦ ଅଗମ୍ୟ ଯାର କୀର୍ତ୍ତିଚୟ ।
ଯାହାଙ୍କ ଆଦେଶେ ବସୁମତୀ ଅୟ, ଦିବାକର ଶଶୀ ଉଦୟ,
ସୁରଗଣ ଯାର କୃପାରୁ ଅମୃତ ପାନକରି ହେଲେ ଅକ୍ଷୟ,
ଧ୍ରୁବର ଖଣ୍ଡିଲେ ଯେହୁ ପାପତାପ ନିରୟ ।
ଅବଶ୍ୟ ବହିବେ ସେହୁ ମହୀପତି ତନୟ । ୧ ।

ସମସ୍ତେ—ଜୟ ଜଗଦୀଶ୍ୱର ହରେ ।

(ଯବନିକା ପତନ ।)

ସମ୍ପୂର୍ଣ୍ଣ ।



Printed by V. Kar., U. S. Press, Cuttack.